# ଅପରାଧ ଓ ଅପରାଧୀ






ଡକ୍ଟର ରାଧାନାଥ ରଥ

ମନସ୍ତତ୍ତ୍ୱ କଥା : ୪

# ଅପରାଧ ଓ ଅପରାଧୀ

ଲେଖକ :
ପ୍ରଫେସର୍ ଡକ୍ଟର ରାଧାନାଥ ରଥ

ଗ୍ରନ୍ଥମନ୍ଦିର

ପ୍ରକାଶକ :

ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

ବିନୋଦବିହାରୀ, କଟକ-୨

ମୁଦ୍ରକ :

**ଗ୍ରାମସେବକ ସମବାୟ ପ୍ରକାଶନ ଲି.**

ବାଖରାବାଦ, କଟକ-୨

ପ୍ରଥମ ମୁଦ୍ରଣ : ୧୯୭୯

ପୁନର୍ମୁଦ୍ରଣ : ୧୯୮୩

ପୁନର୍ମୁଦ୍ରଣ : ୧୯୯୬

ମୂଲ୍ୟ : ୪୮-୦୦

## ସୂଚୀ



———

# ସାମାଜିକ ସଂସ୍ଥା ଓ ଅପରାଧ

ସବୁ ଯୁଗରେ ଏବଂ ସବୁ ସମାଜରେ ସମାଜଦ୍ୱାରା ସ୍ୱୀକୃତ ନିୟମ କାନୁନ ଭାଙ୍ଗି ଅସାମାଜିକ ଅପରାଧରେ ଲିପ୍ତ ହେବା ଲୋକ ଦେଖାଯାନ୍ତି । କିନ୍ତୁ ସମାଜର ପ୍ରକୃତି ଓ ନିୟମକାନୁନର ବୈଶିଷ୍ଟ୍ୟ ଅନୁସାରେ ଅପରାଧର ମାତ୍ରା ଓ ଚରିତ୍ର ପ୍ରତିଫଳିତ ହୋଇଥାଏ । ଗୋଟିଏ ସମାଜରେ କେତେକ ଧରଣର ଅସାମାଜିକ ଓ ନିୟମ-ବହିର୍ଭୂତ କାର୍ଯ୍ୟ ବେଶି ପରିମାଣରେ ଦେଖାଯାଏ ତ ଆଉ କେତେକ ସମାଜରେ ଆଉ କେତେ ପ୍ରକାରର ବେଆଇନ କାର୍ଯ୍ୟ ଆଖିରେ ପଡ଼େ । ଉଦାହରଣ ସ୍ୱରୂପ ଆମ ଦେଶରେ ବର୍ତ୍ତମାନ ପରିସ୍ଥିତିରେ ଅନ୍ୟାନ୍ୟ ସାମାଜିକ ପରିବର୍ତ୍ତନ ନକରି—ଉପଯୁକ୍ତ ଭାବରେ ଲୋକଶିକ୍ଷା କାର୍ଯ୍ୟକ୍ରମ ପ୍ରବର୍ତ୍ତନ ନକରି, ମଦ କାରବାର ରୋକିବା ପାଇଁ ସରକାରୀ କଳକୁ ସମ୍ପୂର୍ଣ୍ଣ ରୂପେ ନ ବଦଳାଇ, ହଠାତ୍ ଯଦି ମଦ୍ୟପାନ ନିଷିଦ୍ଧ କରୁ ତା'ହେଲେ ଯେଉଁ ବିଭ୍ରାଟ ଦେଖାଦେବ ଏବଂ ଯେତେ ବେଶି ଅପରାଧର ମାତ୍ରା ବଢ଼ିଯିବ, ତାହା ଏହି ସମାଜର ପ୍ରକୃତି ଓ ଆଇନକର୍ତ୍ତାଙ୍କର ବ୍ୟକ୍ତିଗତ ଖାମଖିଆଲ ମନୋଭାବ ଯୋଗୁଁ ସମ୍ଭବ ହେଲା ବୋଲି ଭାବିବାକୁ ହେବ । ଖାଲି ସେତିକି ନୁହେଁ; ଯେଉଁ କର୍ତ୍ତାମାନେ ଆଇନ କରନ୍ତି, ସେମାନଙ୍କ ଭିତରୁ ଅଧିକାଂଶଙ୍କର ଏ ବିଷୟରେ କୌଣସି ଆନ୍ତରିକତା ନଥାଏ—କିମ୍ବା ଏମାନଙ୍କ ଭିତରୁ ବହୁ ଲୋକ ପ୍ରକୃତରେ ମଦ୍ୟପ ଏବଂ ଏହି ଆଇନ ପ୍ରଥମେ ସେମାନେ ଭାଙ୍ଗନ୍ତି । ଏପରି ପରିସ୍ଥିତିରେ ସମାଜରେ ଏହି ଆଇନର କୌଣସି ମର୍ଯ୍ୟାଦା

ନାହିଁ । ତେଣୁ ଏହିପରି ଆଇନ ଭାଙ୍ଗିବାରେ ମଧ୍ୟ କାହାରି ପରୁଆ ଥିବା ଜଣା ହୁଏନାହିଁ । ମୋଟାମୋଟି ଭାବରେ ଆଇନ ବିରୁଦ୍ଧରେ ମଦ ଖାଇବା ଲୋକ, ମଦର ଚୋରାକାରବାର ବ୍ୟବସାୟୀ ଏବଂ ଆଇନରକ୍ଷକଙ୍କ ମଧ୍ୟରେ ଗୋଟିଏ ପ୍ରକାର ସାମାଜିକ ବୁଝାମଣା ଥିଲା ପରି ଜଣାଯାଏ ।

ସେହିପରି ଆଉ ଗୋଟିଏ ଉଦାହରଣ ଦିଆଯାଇପାରେ । 'ଖାଦ୍ୟ ଦ୍ରବ୍ୟରେ କଳାବଜାର କରିବା, କୌଣସି ଜିନିଷର ଆଇନ ସମ୍ମତ ଦାମ୍‌ରୁ ବେଶି ଦାବି କରିବା, ଚୋରାମାଲ କାରବାର କରିବା, ନିର୍ବାଚନରେ ନିୟମ ବହିର୍ଭୂତ ଖର୍ଚ୍ଚ କରିବା ପ୍ରଭୃତି ସାମାଜିକ ଅପରାଧ ଭାରତବର୍ଷରେ ଏତେ ବେଶି ଯେ, ଅନ୍ୟାନ୍ୟ ଅପରାଧ ଏସବୁ ପାଖରେ ପିଲା ଖେଳି ବୋଲି ମନେହୁଏ । ଜେଲ୍‌ରେ ଥିବା ଅପରାଧୀକୁ ଦେଖିଲେ ମନେହୁଏ ଯେ ଆମ ସମାଜରେ ବହୁ ଯୁଗ ଧରି ପ୍ରଚଳିତ ଏବଂ ସର୍ବବାଦୀ ସମ୍ମତ "ନେଇ ଆଣି ଥୋଇ ଜାଣିଲେ ଚୋର ବଡ଼ ଭଲ" ଭଳି ସାମାଜିକ ନୀତିଟିକୁ ଏମାନେ ଉପଯୁକ୍ତ ଭାବରେ ପ୍ରୟୋଗ କରି ପାରିନ ଥିବାରୁ ସମାଜ ଏମାନଙ୍କୁ ଜେଲ୍‌ରେ ଭର୍ତ୍ତିକରିଦେଇଛି । ଏହା କିଛି ଆକସ୍ମିକ ଘଟଣା ନୁହେଁ ଯେ ଉପରୋକ୍ତ ନୀତି ନିୟମଟି ଆମ ସ୍କୁଲରେ ପ୍ରଚଳିତ ପାଠ୍ୟପୁସ୍ତକରେ ବହୁ ବର୍ଷ ଧରି ରହିଆସିଥିଲା ।

ଲାଞ୍ଚ ନେବା ବା ଦେବା ଆଇନ ବିରୋଧୀ କାମ । କିନ୍ତୁ ଏହି ଅସାମାଜିକ କାର୍ଯ୍ୟରେ ଲିପ୍ତ ନ ଥିବା ଲୋକ ସଂଖ୍ୟା ବର୍ତ୍ତମାନ ଯୁଗରେ ବହୁତ କମ୍ ବୋଲି ଜଣାଯାଏ । ଏ ବିଷୟରେ ଅଧିକ ଉଦାହରଣ ଦେବାର ଆବଶ୍ୟକତା ନାହିଁ,କାରଣ ଏପରି କୌଣସି ବ୍ୟକ୍ତି ନାହିଁ ଯେ କି ଏ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । କିନ୍ତୁ ମଝିରେ

ମନ୍ଦିରରେ ପାଞ୍ଚଦଶ୍ଟଙ୍କା ନେଲବେଳେ ଲୋକେ ଧରପଡ଼ ଗୁଳ୍ଲଷ ହଗନ୍ତ—ପାଞ୍ଚ ଏଣହଜାର ଟଙ୍କା ନେବାପାଇଁ ଜେଲଯାଆନ୍ତି । କିନ୍ତୁ କୋଟିକୋଟି ଟଙ୍କା ନେବାବାଲା ଏହି ଆଇନ ତିଆର କରିବାଗ, ତାହା ପ୍ରୟୋଗ କରିବାର ଦୋଷୀର ବିଚାର କରିବାର ଏବଂ ଏପରି ଦୋଷୀକୁ ଜେଲରେ ପୂରାଇବାର ସଂପୂର୍ଣ୍ଣ ଦାୟିତ୍ୱ ନିଜ ହାତରେ ରଖିଥାଆନ୍ତି ।

ଏହିପରି ଅନେକ ଗୁଡ଼ିଏ ଆଇନ ବିରୋଧୀ କାର୍ଯ୍ୟ ପାଇଁ ଅପରାଧୀ ସହିତ ସମାଜର ବହୁ ଲୋକଙ୍କର ସହଯୋଗ ଥାଏ । ଅପରାଧୀର କାର୍ଯ୍ୟରେ ଏମାନଙ୍କର ସହାନୁଭୂତି ଥାଏ ଓ ଦୋଷୀକୁ ସାହାଯ୍ୟ କରିବା ପାଇଁ ବହୁ ଲୋକ ବ୍ୟଗ୍ର ଥାଆନ୍ତି । ଏପରି ଦୋଷୀର ଅସାମାଜିକ କାର୍ଯ୍ୟକଳାପ ଉପରେ ବହୁ ଲୋକଙ୍କର ଜୀବନଯାପନ ପ୍ରଣାଳୀ ନିର୍ଭର କରେ । ଦେଶରେ କିଣିବା ଲୋକ ନଥିଲେ ଚୋରବାଗବାର ସମ୍ଭବ ହୁଅନ୍ତା ନାହିଁ । ଚୋରବେପାରୀଙ୍କୁ ସାହାଯ୍ୟ କରି ଓକିଲମାନେ ବେଶ୍ ମୋଟା ରୋଜଗାର କରନ୍ତି । ଏଥିପାଇଁ ମଧ୍ୟ ସମାଜସମ୍ମତ ନୀତି ତଥା ବିବେକାନୁମୋଦିତ ନୈତିକତା ସମାଜରେ ରହୁଛି । ତେଣୁ ଏ ପ୍ରକାର ଅସାମାଜିକ କାର୍ଯ୍ୟପାଇଁ ଯେ କେବଳ କେତେକ ଅପରାଧୀ ଦାୟୀ ଏବଂ ସେମାନଙ୍କୁ ଜେଲ୍‌ରେ ଭର୍ତ୍ତି କରିଦେଲେ ଏହାର ସମାଧାନ ହୋଇଯିବ, ଏହା କେହି ବୋଧହୁଏ ବିଶ୍ୱାସ କରନ୍ତି ନାହିଁ । ଏହା ଗୋଟିଏ ସାମାଜିକ ଢଙ୍ଗ—ଲୋକଦେଖାଣିଆ ନୈତିକତା—ଧର୍ମକୁ ଆଖି ଠାରି ଭଦ୍ରଲୋକ ସାଜିବାର ନାଟକୀୟ ସାମାଜିକରଣ ମୂଲ୍ୟବୋଧ ।

ଏହି କାରଣରୁ ସମାଜବିତ୍‌ମାନେ ଅପରାଧୀର ପ୍ରକୃତି, ତାର ଅସାମାଜିକ କାର୍ଯ୍ୟାବଳୀର ଚରିତ ଓ କାର୍ଯ୍ୟ କାରଣ ସମ୍ପର୍କରେ

ବିଶ୍ଳେଷଣ କଲାବେଳେ ପ୍ରଚଳିତ ସାମାଜିକ ସଂସ୍ଥା, ତାର ଆଇନ-ଗତ ଓ ନୈତିକ ମୂଲ୍ୟବୋଧ, ସାମାଜିକ, ରାଜନୈତିକ ଓ ଅର୍ଥ-ନୈତିକ ବୈଶିଷ୍ଟ୍ୟ ପ୍ରଭୃତି ସାଂଗଠନିକ ଚରିତ୍ର ବିଷୟରେ ମଧ୍ୟ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଥାଆନ୍ତି । ତା' ନହେଲେ ଅସାମାଜିକ କାର୍ଯ୍ୟାବଳୀର କାର୍ଯ୍ୟକାରଣ ସମ୍ପର୍କ ବିଷୟରେ ସଠିକ ଧାରଣା କରିହେବନାହିଁ ।

ସମାଜର କେତେକ ଲୋକ ସମାଜସମ୍ମତ ଲକ୍ଷ୍ୟ ଅସାମାଜିକ କାର୍ଯ୍ୟ ସାହାଯ୍ୟରେ ହାସଲ କରନ୍ତି । ଭଲ ଖାଇବା ଓ ପିନ୍ଧିବା, ଭଲ ଘରେ ରହିବା, ଗାଡ଼ି ମଟରରେ ଚଢ଼ିବା ପ୍ରଭୃତି ଅଭିଳାଷ ସାଧନ କରିବାକୁ ସମର୍ଥ ହୋଇଥିବା ଲୋକକୁ ସମାଜ ସମ୍ମାନ ଦେଖାଇଥାଏ । ଯାହାର ଯେତେ ଅର୍ଥ, ଯେତେ ଆଡ଼ମ୍ବର, ସୌଖୀନ ଓ ବିଳାସପୂର୍ଣ୍ଣ ସାମଗ୍ରୀ ସେ ଯେତେ ବେଶି ବ୍ୟବହାର କରିପାରିଲା, ତାର ସାମାଜିକ ଖ୍ୟାତି ସେତେ ବେଶି । ତାକୁ ବେଶି ଲୋକ ମର୍ଯ୍ୟାଦା ଦିଅନ୍ତି; ସେ ଲେଖକ, ରାଜନୀତିଜ୍ଞ, ଧାର୍ମିକ ହେବା ପାଇଁ ଅତି ସହଜରେ ସମର୍ଥ ହୋଇଥାଏ । କିନ୍ତୁ କେତେକ ଲୋକ ଯଦି ଅସାମାଜିକ ଉପାୟରେ ମଧ୍ୟ ଧନୀ ହୋଇ ପାରନ୍ତି ତାହେଲେ ସେମାନଙ୍କର ଧନୀ ହେବାର ଉପାୟକୁ ସମାଜର ବହୁ ଲୋକ ଖୁବ୍ ବେଶି ଗୁରୁତର ଅପରାଧ ବୋଲି ଧରନ୍ତି ନାହିଁ । ଫଳରେ ଯେଉଁମାନେ ଆଇନସମ୍ମତ ଉପାୟରେ ଏହି ଖ୍ୟାତି ଅର୍ଜନ କରି-ପାରନ୍ତି ନାହିଁ ସେମାନେ ଅସାମାଜିକ କାର୍ଯ୍ୟରେ ଲିପ୍ତ ହେବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ତାହାହେଲେ ନିମ୍ନଶ୍ରେଣୀର ଲୋକ ଖାଇବାକୁ ନ ପାଇଲେ ଅସାମାଜିକ କାର୍ଯ୍ୟ କରିବାକୁ କାହିଁକି ପଶ୍ଚାଦପଦ୍ ହେବେ ? ଅର୍ଥାତ୍ ସମାଜ ଯେଉଁ କେତେ-ଗୁଡ଼ିଏ ଲକ୍ଷ୍ୟ ସମସ୍ତଙ୍କ ପାଇଁ ଶ୍ରେୟସ୍କର ବୋଲି ମତ ନିର୍ଧାର୍ଯ୍ୟ

କରେ ଅଥଚ ଏହି ଲକ୍ଷ୍ୟରେ ପହଞ୍ଚିବା ପାଇଁ ଯଥେଷ୍ଟ ଆଇନ-ସମ୍ମତ ଉପାୟ ସବୁ ଲୋକଙ୍କ ପାଖରେ ପହଞ୍ଚାଇ ପାରୁନାହିଁ, ସେହି ସାମାଜିକ ସଂସ୍ଥାର ଚରିତ୍ରହିଁ ଅସାମାଜିକ କାର୍ଯ୍ୟାବଳୀ ପାଇଁ ଦାୟୀ । ତା ଛଡ଼ା ଯେଉଁ ସମାଜରେ ଏହି ଅଭୀଷ୍ଟ ଲକ୍ଷ୍ୟରେ ପହଞ୍ଚିବା ପ୍ରଣାଳୀ ଯେତେ ସୀମାବଦ୍ଧ—ଅଧିକାଂଶ ଲୋକେ ଅଭୀଷ୍ଟ ଲକ୍ଷ୍ୟର ଅଧାଅଧି ରାସ୍ତା ଅତିକ୍ରମ ପାଇଁ ଯେବେ ଅସମର୍ଥ, ତାହେଲେ ସେପରି ସମାଜରେ ଅସାମାଜିକ କାର୍ଯ୍ୟର ମାତ୍ରା ଓ ପରିସର ସେତେ ବେଶି ହେବାକୁ ବାଧ୍ୟ । ତେଣୁ ସାମାଜିକ ସଂସ୍ଥା ଅତି ନିର୍ଦ୍ଦିଷ୍ଟ ଭାବରେ କେତେକ ଲୋକଙ୍କୁ ଅସାମାଜିକ କାର୍ଯ୍ୟ ଆଡ଼କୁ ନିର୍ଧାର୍ଯ୍ୟ ଭାବରେ ଠେଲି ଦେଇଥାଏ । ସେଥିପାଇଁ କେତେକ ସମାଜବିତ୍ କହନ୍ତି ଯେ ଅସାମାଜିକ କାର୍ଯ୍ୟର ମାତ୍ରା ଓ ପରିସର ପାଇଁ ସାମାଜିକ ସଂସ୍ଥାର ଚରିତ୍ରହିଁ ସମ୍ପୂର୍ଣ୍ଣ ରୂପେ ଦାୟୀ । ସାମାଜିକ ସଂସ୍ଥା ଯେପରି କେତେକ ଅସାମାଜିକ କାର୍ଯ୍ୟ କରିବାକୁ କେତେକ ଲୋକଙ୍କଠାରେ ଏହାର ଅନିବାର୍ଯ୍ୟ ଦାବି ଜାହିର କରେ । କେତେକ ଲୋକ ଯେପରି ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରି ରହିଥାଆନ୍ତି ସ୍ମଗ୍ଲରଠାରୁ ସ୍ମଗ୍ଲମାଲ ପାଇବା ପାଇଁ—କେତେକ ସୁବିଧା ସୁଯୋଗ ଲାଭ ଉଦ୍ଦେଶ୍ୟରେ ଲାଞ୍ଚ ଦେବାପାଇଁ । ଆଇନ ଏପରି ତିଆରି ହୋଇଥିବ ଯେ ଓକିଲ ନ ହେଲେ କେଶ୍ ହୋଇପାରିବ ନାହିଁ ! ନିର୍ବାଚନ ସଂସ୍ଥା ଏପରି ହୋଇଥିବ ଯେ ପ୍ରଧାନମନ୍ତ୍ରୀ ମନେମତ ସମସ୍ତେ ଆଇନ ବିରୁଦ୍ଧ କାମ କରାଇବେ । ଲୋକେ ନୋଟ୍ ନେଇ ଭୋଟ ଦେବାପାଇଁ ସେମାନଙ୍କର ନ୍ୟାଯ୍ୟ ପାଉଣା ଦାବି କରିବେ···ଇତ୍ୟାଦି ଇତ୍ୟାଦି ବହୁ ଘଟଣା ଉପରୋକ୍ତ ସମାଜତତ୍ତ୍ୱକୁ ଯେ ପ୍ରତିପାଦିତ କରୁଛି ଏଥିରେ ସନ୍ଦେହ ନାହିଁ ।

ସାମାଜିକ ସଂସ୍ଥାର ଅନ୍ତର୍ନିହିତ ପ୍ରବଞ୍ଚନା ଓ ପ୍ରୋତ୍ସାହନ ଯେଉଁକେତେକ ଲୋକଙ୍କୁ ଏବଂ ଅନେକ ସମୟରେ ସମାଜର ଅଧିକାଂଶ ଲୋକଙ୍କର ଅସାମାଜିକ କାର୍ଯ୍ୟ କରିବା ପାଇଁ ଦାୟୀ ହୁଏ ତାହେଲେ ମନସ୍ତାତ୍ତ୍ୱିକ ଅପରାଧ ପ୍ରବଣତାର ଅର୍ଥ କ'ଣ ହୋଇପାରେ ? ଏହା ନିଶ୍ଚିତ ଭାବରେ ରକ୍ତଗତ; ବଂଶଗତ ବା ପ୍ରତିଭାସମ୍ବନ୍ଧର ଜନ୍ମ ସମ୍ବଳିତ ଦୋଷ ଦୁର୍ବଳତା ନୁହେଁ । କେତେକ ପ୍ରଭାବଶାଳୀ ଓ କେତେକ ଅସମର୍ଥ ଲୋକ ବାଣ୍ଡନ୍ତି ସାମାଜିକ ପରିବେଶର ପ୍ରଭାବରେ ପରିଚାଳିତ ହୋଇ ନିଜର ଶିକ୍ଷା ଦୀକ୍ଷା, ରୁଚି, ଯୋଗ୍ୟତା ଅନୁଯାୟୀ ସମାଜ ସମ୍ମତ ଲକ୍ଷ୍ୟରେ ଅସାମାଜିକ ଉପାୟରେ ଉପନୀତ ହେବାକୁ ଉଦ୍ୟମ କରନ୍ତି— ଅଧିକାଂଶ ସଫଳ ହୁଅନ୍ତି ଏବଂ ମଝିରେ ମଝିରେ ସାମାନ୍ୟ କେତେକ ଜେଲ୍ ଯାଆନ୍ତି । କେଉଁ ସମାଜରେ ଏମାନଙ୍କର ସଂଖ୍ୟା ଅନେକ ବେଶି ତ ଆଉ କେଉଁ ସମାଜରେ ଏମାନେ ଅଳ୍ପ ସଂଖ୍ୟକ । ସାମାଜିକ ଲକ୍ଷ୍ୟ ସାଧନ ଲାଗି ଆଇନସମ୍ମତ ଉପାୟ ଯଦି ସହଜରେ ବହୁ ଲୋକଙ୍କୁ ମିଳିପାରେ, ତାହେଲେ ଏପରି ସମାଜରେ ଅପରାଧ ସଂଖ୍ୟା କମିଯାଏ ଏବଂ ଯେଉଁଠି ଏହି ଉପାୟ-ଗୁଡ଼ିକ ଅପେକ୍ଷାକୃତ କଷ୍ଟସାଧ୍ୟ, ସେଠାରେ ଅସାମାଜିକ କାର୍ଯ୍ୟାବଳୀର ପ୍ରକୋପ ତଥା ବୃଦ୍ଧି ସେତେ ବେଶି । ତେଣୁ ଏପ୍ରକାର ଅସାମାଜିକ କାର୍ଯ୍ୟାବଳୀକୁ ମନସ୍ତାତ୍ତ୍ୱିକ ପ୍ରବଣତାର ପ୍ରତିଫଳନ ବୋଲି କହିବା ଠିକ୍ ନୁହେଁ । ଅପରାଧ ପ୍ରବଣତା ମନସ୍ତାତ୍ତ୍ୱିକ କାରଣରୁ ଅଳ୍ପ କେତେକ ଲୋକଙ୍କଠାରେ ଦେଖାଦେଇଥାଏ, ଯାହା ଫଳରେ କି ସେମାନେ ସାମାନ୍ୟ କିଛି ଜିନିଷ ଚୋରି ଆଦି କରନ୍ତି—ଯାହାକି ସେମାନଙ୍କ ପକ୍ଷରେ ଆଦୌ ମୂଲ୍ୟବାନ୍ ନୁହେଁ । ହୁଏତ ଏପରି କେତେକ ଅପରାଧପ୍ରବଣ ଲୋକ ସ୍ତ୍ରୀ-

ଲୋକଙ୍କୁ ଅଶ୍ଳୀଳ ଇଙ୍ଗିତ ନଦେଇ ରହି ପାରନ୍ତି ନାହିଁ କିମ୍ବା କେତେକ କ୍ଷେତ୍ରରେ ନାରୀଧର୍ଷଣ ନକରି ନିଜକୁ ନିୟନ୍ତ୍ରଣ କରି ପାରନ୍ତି ନାହିଁ । ଏହିପରି କେତେକଙ୍କଠାରେ ଅପରାଧପ୍ରବଣତା ରହିଛି ବୋଲି କୁହାଯାଇପାରେ, କିନ୍ତୁ ଉପରେ ବର୍ଣ୍ଣିତ ହୋଇଥିବା ସାମାଜିକ ଦୋଷ ଦୁର୍ବଳତାଜନିତ ଅପରାଧୀଙ୍କ ତୁଳନାରେ ଏମାନଙ୍କ ସଂଖ୍ୟା ବହୁତ କମ୍ କହିଲେ ଚଳେ ।

—

# ଅପରାଧପ୍ରବଣତା ଯୋଗୁଁ ଅପରାଧ

ଅପରାଧପ୍ରବଣତା କହିଲେ ସାଧାରଣତଃ ମନୁଷ୍ୟର ଅବଚେତନ ମନରୁ ବାଧ୍ୟବାଧିକତା ଭାବେ ତାର ଅପରାଧ କରିବା ଇଚ୍ଛାକୁ ପ୍ରବଳ ଭାବେ ଉଦ୍ଦୀପିତ କରିବା ଅନିୟନ୍ତ୍ରିତ ପ୍ରବୃତ୍ତିକୁ ବୁଝାଏ । କେତେକ ମନୋବୈଜ୍ଞାନିକଙ୍କ ମତରେ କେତେକ ଅବଦମିତ ଇଚ୍ଛା ମନୁଷ୍ୟର ଅବଚେତନ ମନରେ ଲୁଚି ହୋଇ ରହିଥାଏ ଏବଂ ଏ ପ୍ରକାର ଇଚ୍ଛା ଅସାମାଜିକ ହୋଇଥିବାରୁ ମନୁଷ୍ୟ ମନରେ ଏଥିଲାଗି ଅନ୍ତରଦ୍ଵନ୍ଦ୍ୱ ସଂଘର୍ଷ ଲାଗିରହିଥାଏ । ଏହି ସଂଘର୍ଷର ଆତ୍ମଘାତୀ ଯନ୍ତ୍ରଣାରୁ ମୁକ୍ତି ଲାଭ କରିବା ପାଇଁ ମଝିରେ ମଝିରେ କମ୍ବା ଧାରାବାହିକ ଭାବେ ଜଣେ କେତେଗୁଡ଼ିଏ ସାଂଘାତିକ ବା ସାଧାରଣ ଅସାମାଜିକ କାମ କରେ, ଯାହା ତାର ସଚେତନ ମନର ନିୟନ୍ତ୍ରଣ ବାହାରେ । ସେ ଯନ୍ତ୍ରବତ୍ ଏହିପରି ଅନେକ କାମ କରିଯାଏ । ତାର ପ୍ରବଳ ପ୍ରବୃତ୍ତିଗତ ଜୈବିକଶକ୍ତିର ଉଦ୍‌ଗୀରଣକୁ ସେ କୌଣସି ମତେ ଅଟକାଇ ପାରେ ନାହିଁ । ଫଳରେ ନାନା ରକମର ଅପରାଧ ଏମାନଙ୍କଦ୍ୱାରା ସଂଘଟିତ ହୁଏ ।

କେତେକ ଘଟଣାରେ ଜଣେ ଜଣେ ଯନ୍ତ୍ରବତ୍ କେତୋଟି ସାମାନ୍ୟ ଜିନିଷ ଦୋକାନରୁ ଚୋରି କରନ୍ତି । ଏସବୁ ଜିନିଷ ତାଙ୍କର ବିଶେଷ କାମରେ ନଆସିପାରେ, କମ୍ବା ତାଙ୍କର କିଣିବା-ଶକ୍ତି ମଧ୍ୟ ଥାଏ ସେସବୁ କିଣିବାପାଇଁ । ତଥାପି ସେ ସେହି କେତୋଟି ସାମାନ୍ୟ ଜିନିଷ ଧନଧନ ଚୋରି କରେ । ଏହି ଅନିୟନ୍ତ୍ରିତ ଚୋରି ବ୍ୟବହାରକୁ କେପ୍ଟୋମାନିଆ କୁହାଯାଏ ।

ଆଜି କେତେକ ଅସ୍ୱାଭାବିକ ଲୋକ ଅଛନ୍ତି ଯେଉଁମାନେ କି ହଠାତ୍ କାହାକୁ ମାରି ବି ଦିଅନ୍ତି । ଏମାନଙ୍କ ମନ ଉପରକର ସ୍ତରରୁ ବହିଷ୍କୃତ ହୋଇ ରହିଥିବାରୁ ଏବଂ ଏମାନଙ୍କର ଅଚେତନ ମନରେ ବହୁଦିନରୁ ବାପ ମା ବା ଏପରି କୌଣସି ଲୋକକୁ ମାରିବା ପାଇଁ ପ୍ରବଳ ପ୍ରବୃତ୍ତିଗତ ଗୁପ୍ତ କାମ କରୁଥିବାରୁ ହଠାତ୍ କାହାକୁ ମାରିଦିଅନ୍ତି, ଅଥଚ ମଣିଷ ମାରିବାର ସମସ୍ତ ପ୍ରକାର ଫଳାଫଳ ବିଷୟରେ ସେମାନଙ୍କର ଜ୍ଞାନ ନଥାଏ । ଏହିପରି ନାନାପ୍ରକାର ଅପରାଧ ରହିଛି ଯେଉଁଗୁଡ଼ିକ ଅସ୍ୱାଭାବୀ ପ୍ରକୃତିର ଲୋକ ମସ୍ତିଷ୍କ ବିକୃତି ଯୋଗୁ କରନ୍ତି, କିନ୍ତୁ ସେଥିପାଇଁ ସେମାନଙ୍କର ଅନ୍ତର୍ଦୃଷ୍ଟି ନଥାଏ, ସେମାନେ ଏ ବିଷୟରେ ସଚେତନ ମଧ୍ୟ ନୁହନ୍ତି । ଏ ପ୍ରକାର ଅପରାଧକୁ ସହଜରେ ଚିହ୍ନି ହୁଏ ଏବଂ ଏମାନଙ୍କର ମାନସିକ ଚିକିତ୍ସାର ଆବଶ୍ୟକତା ଥାଏ । ଏ ପ୍ରକାର ମାନସିକ ପ୍ରବଣତା ନାନା କାରଣରୁ ଲୋକମାନଙ୍କଠାରେ ଦେଖାଯାଇଥାଏ । ଏ ପ୍ରକାର ଅପରାଧୀ ସାମାଜିକ ପରିବେଶ ଅନୁସାରେ ପରିଚାଳିତ ଅପରାଧୀଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ।

ତା ଛଡ଼ା ଅନେକ ସମୟରେ ଦେଖାଯାଏ ଯେ ଅଳ୍ପ ବୟସ୍କ ଅପରାଧୀଙ୍କର ବୁଦ୍ଧି ସାଧାରଣ ପିଲାଙ୍କର ବୁଦ୍ଧିଠାରୁ ବହୁତ କମ୍ । କମ୍ ବୁଦ୍ଧିଆ ପିଲାକୁ ବୁଦ୍ଧିମାନ୍ ଓ ଅଭିଜ୍ଞ ବୟସ୍କ ଅପରାଧୀମାନେ ସେମାନଙ୍କର ସୁଚିନ୍ତିତ ଅପରାଧ କାମରେ ନିଯୁକ୍ତ କରିଥାଆନ୍ତି । କମ୍ ବୁଦ୍ଧି ପିଲାକୁ ଏପରି କାମରେ ଲଗାଇଦେବା ସହଜ ହୁଏ । ବହୁ ଉନ୍ନତ ଦେଶରେ ଏହା ଦେଖାଯାଏ । କିନ୍ତୁ ଭାରତ ପରି ଅନୁନ୍ନତ ଦେଶରେ ଅଳ୍ପ ବୟସ୍କ ଅପରାଧୀମାନେ ବୁଦ୍ଧିରେ ସାଧାରଣ ପିଲାଙ୍କଠାରୁ କିଛି କମ୍ ନୁହନ୍ତି । ଆମର ଗୋଟିଏ ଗବେଷଣାରୁ ଏହା ଜଣାଯାଇଛି । ତାର କାରଣ ଉନ୍ନତ ଦେଶରେ

ଶିକ୍ଷା ବାଧ୍ୟତାମୂଳକ ହୋଇଥିବାରୁ ସବୁ ପିଲାଏ ସ୍କୁଲକୁ ଯାଆନ୍ତି । କିନ୍ତୁ କମ୍ ବୁଦ୍ଧିଆ ପିଲା ସ୍କୁଲରୁ ଲୁଚି ପଳାଇ ଆସନ୍ତି, କିମ୍ବା ସ୍କୁଲକୁ ଆଦୌ ଯାଆନ୍ତି ନାହିଁ । ଫଳରେ ସେମାନେ ରାସ୍ତା ଘାଟରେ ବୁଲୁଥାଆନ୍ତି ଏବଂ ଏମାନଙ୍କ ଭିତରୁ କେତେକଙ୍କୁ ଅଭିଜ୍ଞ ଅପରାଧୀମାନେ ନିଜ ଦଳକୁ ଆଣିପାରନ୍ତି ଏବଂ ବୁଦ୍ଧିଆ ପିଲାଏ ସ୍କୁଲରେ ରହିଯାଆନ୍ତି । କିନ୍ତୁ ଆମ ଦେଶରେ ଶିକ୍ଷା ବାଧ୍ୟତାମୂଳକ ନ ଥିବାରୁ ଯେକୌଣସି ଦଳେ ପିଲା ସ୍କୁଲକୁ ଯାଆନ୍ତି—ଆଉ ଦଳେ ପିଲା ଯେଉଁମାନେ ନିର୍ବୁଦ୍ଧିଆ ନ ହୋଇ ପାରନ୍ତି, କିନ୍ତୁ ଅନଗ୍ରସର ପାରିବାରିକ ଓ ସାମାଜିକ ପରିସ୍ଥିତି ଯୋଗୁଁ ସେମାନେ ସ୍କୁଲକୁ ଯାଆନ୍ତି ନାହିଁ—ତେଣୁ ଏହି ଦୁଇ ଦଳଙ୍କ ଭିତରେ ବୁଦ୍ଧିଗତ ପାର୍ଥକ୍ୟ ରହିବା କଥା ନୁହେଁ । ତା ଛଡ଼ା ମଧ୍ୟ ସ୍କୁଲରେ ପଢ଼ୁଥିବା ପିଲାଙ୍କ ଭିତରୁ ଅନେକେ ଅନ୍ୟାନ୍ୟ କାରଣରୁ ଅପରାଧର ରାସ୍ତା ବାଛି ନେଇ ପାରନ୍ତି । ସେହି କାରଣରୁ ଆମ ଦେଶରେ ସାଧାରଣ ପିଲା ଓ ଅପରାଧୀଙ୍କ ଭିତରେ ବୁଦ୍ଧିଗତ ତାରତମ୍ୟ ଦେଖାଯାଏ ନାହିଁ । ଅପରାଧ ବୃତ୍ତିରେ ନିଯୁକ୍ତ ପିଲାଏ ସାଧାରଣ ପିଲାଙ୍କର ଅନ୍ୟ ଗୋଟିଏ ଗୋଷ୍ଠୀ ମାତ୍ର ।

ଆଉରି ଗୋଟିଏ ଘଟଣା ଅପରାଧୀଙ୍କ ଭିତରେ ଦେଖାଯାଏ—ସାଧାରଣ ଲୋକଙ୍କ ତୁଳନାରେ ଏମାନଙ୍କ ଭିତରେ ବେଶି ସଂଖ୍ୟାରେ ଅନ୍ଧ, କାଲ ଓ ବିକଳାଙ୍ଗ ଲୋକ ଦେଖାଯାଆନ୍ତି । ତାର ଅର୍ଥ ନୁହେଁ ଯେ ବିକଳାଙ୍ଗ ହେଲେ ଏମାନଙ୍କ ଭିତରେ ଅପରାଧ ପ୍ରବଣତା ବେଶିମାତ୍ରାରେ ଦେଖାଯାଏ । ବିକଳାଙ୍ଗ ଲୋକେ ଆମ ଦେଶରେ ବେଶି ପରିମାଣରେ ଅବହେଳିତ ହୋଇ ରହିଥାଆନ୍ତି । ସେମାନେ ମଧ୍ୟ ଅନେକ ସମୟରେ ଥଟ୍ଟା ପରିହାସ ଓ ବିଦ୍ରୂପର ପାତ୍ର ହୋଇଥାଆନ୍ତି । ତା ଫଳରେ ସେମାନଙ୍କ

ମନରେ ଗୋଟିଏ ପ୍ରକାର ଗଭୀର ନ୍ୟୂନମନୋଭାବ ସୃଷ୍ଟି ହୋଇଥାଏ । ଏହି ଅପ୍ରୀତିକର ନ୍ୟୂନମନୋଭାବ ଜନିତ ମାନସିକ ଯନ୍ତ୍ରଣାରୁ ରକ୍ଷା ପାଇବା ପାଇଁ ଏବଂ ଯେଉଁ ସମାଜ ତାଙ୍କୁ ହେୟ ଜ୍ଞାନ କରେ ତା ବିରୁଦ୍ଧରେ ପ୍ରତିଶୋଧ ନେବା ପାଇଁ ଏମାନେ ଅସାମାଜିକ କାର୍ଯ୍ୟରେ ମନ ଦିଅନ୍ତି । ଏହା ଫଳରେ ସେମାନଙ୍କର ଆତ୍ମସନ୍ତୋଷ ହୁଏ, ହୀନମନ୍ୟତାଜନିତ ଗ୍ଳାନିରୁ ସେମାନେ କିଛି ପରିମାଣରେ ରକ୍ଷା ପାଆନ୍ତି । କହିବାକୁ ଗଲେ ବିକଳାଙ୍ଗ ବୋଲି ଏମାନେ ଅପରାଧପ୍ରବଣ ହୁଅନ୍ତି ନାହିଁ । ଯେଉଁ ଲୋକଙ୍କଠାରେ ଅତି ଗଭୀର ନ୍ୟୂନମନୋଭାବ ରହିଛି ଏବଂ ଯେଉଁମାନେ ଅବହେଳିତ ବୋଲି ନିଜକୁ ତୁଚ୍ଛ ମନେକରନ୍ତି, ସେମାନଙ୍କଠାରେ ଅପରାଧ ପ୍ରବଣତା ଦେଖାଦେବାର ସମ୍ଭାବନା ବହୁତ ଅଧିକ । ବିକଳାଙ୍ଗମାନଙ୍କଠାରେ ଏ ପ୍ରକାର ଗଭୀର ଆତ୍ମଗ୍ଳାନି ଥିବାରୁ ସେମାନେ ଏ ପଥ ବାଛିନିଅନ୍ତି ।

ମୋଟାମୋଟି ଭାବରେ କହିବାକୁ ଗଲେ, କେତେକ ପ୍ରକାର ମାନସିକ ବିକୃତି, କମ୍ ବୁଦ୍ଧି ଓ ନାନା ପ୍ରକାର ଶାରୀରିକ ଓ ଆକୃତିଗତ ଦୋଷ ଜନିତ ହୀନମନ୍ୟତା ଯୋଗୁଁ କେତେକ ଲୋକଙ୍କଠାରେ ଅପରାଧପ୍ରବଣତା ଦେଖାଦିଏ । ମସ୍ତିଷ୍କ ବିକୃତିଗ୍ରସ୍ତ ଲୋକଠାରେ ଏହା ପ୍ରବଳ ଭାବରେ କାମ କରେ ଓ ଅନ୍ୟମାନଙ୍କ ଭିତରେ ଏହା କେତେକ ପରିସ୍ଥିତିରେ ଭିନ୍ନ ଭିନ୍ନ ମାତ୍ରାରେ ପ୍ରକାଶ ପାଏ । ଯେଉଁମାନେ ଅପରାଧ କରନ୍ତି ସେ ସମସ୍ତଙ୍କ ଭିତରେ ଅପରାଧପ୍ରବଣତା ନ ଥାଏ । କିନ୍ତୁ କେତେକ ମନସ୍ତାତ୍ତ୍ୱିକ କାରଣରୁ କେତେକ ଅପରାଧୀଙ୍କ ମନରେ ଅପରାଧ ପ୍ରବଣତା ଦେଖାଯାଇଥାଏ । ଯେ କଳା ବେପାରୀ, ଯେ ଲାଞ୍ଚ ଦିଏ, ଲାଞ୍ଚ ନିଏ, ନିର୍ବାଚନ ଦୁର୍ନୀତି

ଯାହାର ରାଜନୈତିକ ବ୍ୟବସାୟଗତ ଅଭ୍ୟାସ, କଳା ଧନ ଉପାର୍ଜ୍ଜନ କରିବା ଯାହାର ବଂଶାନୁକ୍ରମିକ ମୁଖ୍ୟ ବ୍ୟବସାୟ—ଏ ସମସ୍ତେ ସାମାଜିକ ହସ୍ତା ଓ ଏହାର ଭିନ୍ନ ଆଇନ କାନୁନ ଯୋଗୁଁ ଅସାମାଜିକ • କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି । ଏମାନେ ଅତ୍ୟନ୍ତ କୃତକାର୍ଯ୍ୟତାର ସହ କାମ କରନ୍ତି—ଜୀବନତମାମ ଏଥିରେ ଲଗିରହିଥାନ୍ତି, କାରଣ ସେମାନଙ୍କ ପରି ଅପରାଧୀଙ୍କ ସହିତ ସମାଜର ବହୁ ଲୋକ ସହଯୋଗ କରିଥାଆନ୍ତି । ସମାଜର ଅନ୍ୟ-ମାନଙ୍କ ସହାନୁଭୂତାରେ, ଏପରି କି ସରକାରୀ •କଳର ଗୋପନ ପ୍ରୋତ୍ସାହନ ଯୋଗୁଁ ହିଁ ଏମାନେ ଏ ପ୍ରକାର ଅପରାଧ କରିପାରନ୍ତି । ଏମାନଙ୍କର ବ୍ୟକ୍ତିତ୍ୱରେ ଅପରାଧପ୍ରବଣତା ନାହିଁ—ଏମାନେ ସାମାଜିକ ଗଣ୍ଡିରେ ମାଡ଼ିଯାଇଥିବା କର୍କଟ ରୋଗର ପୂତିଗନ୍ଧମୟ ପ୍ରତିଫଳନ ମାତ୍ର ।

---

# ଅପରାଧ ପ୍ରବଣତା ଜନ୍ମଗତ କି ?

ଅନେକେ ଭାବନ୍ତି ଯେ ଅପରାଧ କରିବା ପ୍ରବୃତ୍ତି ଜନ୍ମଗତ । ମନୁଷ୍ୟର ଦେହର ରଙ୍ଗ, ମସ୍ତିଷ୍କର ବୃଦ୍ଧି, ଜୈବିକ ଶରୀରର କ୍ଷୁଧା ତୃଷ୍ଣା ଯେପରି ସହଜାତ ଗୁଣ, ଅପରାଧ ମଧ୍ୟ ସେହିପରି ଗୋଟିଏ ପ୍ରକୃତିଗତ ପ୍ରବୃତ୍ତି—ତାକୁ ବଦଳାଇବାର କୌଣସି ଉପାୟ ନାହିଁ । କେବଳ ସେତିକି ନୁହେଁ, ଏ ପ୍ରକାର ମାନସିକ ବିକାର ସହିତ ବିକୃତ ଅଙ୍ଗ ପ୍ରତ୍ୟଙ୍ଗର ସମ୍ପର୍କ ଥାଇପାରେ ବୋଲି ମଧ୍ୟ ଅନେକେ ବିଶ୍ୱାସ କରୁଥିଲେ । ସେଥିପାଇଁ ଦଳେ ବୈଜ୍ଞାନିକ ବହୁ ଗବେଷଣା କଲେ—ଅପରାଧୀର ଦେହର ଆକୃତି ଅନୁସାରେ ତା'ର ଅପରାଧକୁ ଯୋଡ଼ି ମିଳାଇ ଦେଖିବା ଲାଗି । କିଏ ଆଙ୍ଗୁଠିର ଆକାରରେ ବିକୃତି ଲକ୍ଷ୍ୟ କଲା ତ, କିଏ ହାତ ପାପୁଲିରେ, କିଏ ମୁଣ୍ଡର ଆକୃତିରେ, ମୁହଁର ଗଠନ, ଆଖିର ଚାହାଣି, ହାତ ଗୋଡ଼ର ଗଠନ, ଚୁଳର ଠାଣି ପ୍ରଭୃତିରେ ମଧ୍ୟ ଅପରାଧୀର ନିର୍ଦ୍ଦିଷ୍ଟ ସଙ୍କେତ ଖୋଜିବାରେ ଲାଗିଲେ । ବହୁ ଗବେଷଣା ଓ ନାନାପ୍ରକାର ଅଙ୍ଗ-ପ୍ରତ୍ୟଙ୍ଗର ମାପଚୁପ ପରେ ଏ ସମ୍ବନ୍ଧରେ କୌଣସି ପ୍ରକାର ଯୁକ୍ତିସଙ୍ଗତ ବୈଜ୍ଞାନିକ ତଥ୍ୟ ଉଦ୍ଘାଟିତ ହୋଇପାରିଲା ନାହିଁ । ପରେ ଏ ପ୍ରକାର କଳ୍ପନା ଜଳ୍ପନା ତ୍ୟାଗ କରିବାକୁ ପଡ଼ିଲା । ଆଜିକାଲି ଶରୀରର ଆକୃତି ବିକୃତି ସହିତ ଅପରାଧର ପ୍ରକୃତିର ସମ୍ପର୍କ ବିଷୟରେ କେହି କହିବାକୁ ଆଉ ସାହସ କରୁ ନାହାନ୍ତି—ଏ ବିଷୟରେ ଶେଷ ସିଦ୍ଧାନ୍ତ ହୋଇଯାଇଛି କହିଲେ ଚଳେ । କେହି କେହି ହାତ ଦେଖାଳି ହୁଏତ ଆଙ୍ଗୁଠି ଓ ପାପୁଲିରୁ

ଅପରାଧର ଅଦ୍ଭୁତ ରହସ୍ୟ ଉଦ୍ଭାବନ କରିପାରନ୍ତି; କିନ୍ତୁ ସାଧାରଣତଃ ଏ ପ୍ରକାର ରହସ୍ୟମୟ ସମ୍ପର୍କ ଅପରାଧୀ ଧରାପଡ଼ିଲା ପରେ ହିଁ ସେମାନେ ପ୍ରକାଶ କରିଥାଆନ୍ତି ।

ଅପରାଧୀର ଚିହ୍ନ ଶରୀରର ଅବୟବରେ ପରିସ୍ଫୁଟନ ହୋଇପାରେ; କିନ୍ତୁ ଅପରାଧୀଙ୍କ ମାନସିକ ରୂପ ନେଇ ପିଲା ଜନ୍ମ ହୋଇପାରେ କି ?-ଏ ବିଷୟରେ ଦୁଇଟି ବିରୁଦ୍ଧାତ୍ମକ ମତ ରହିଛି । ଦଳେ ଯଦି କହିବେ ପିଲାର ଏହା ଜନ୍ମଗତ ପ୍ରବୃତ୍ତି, ଆଉ ଦଳେ ବହୁ ଯୁକ୍ତି ଦେଖାଇ କହନ୍ତି ଯେ ଏହା ଗୋଟିଏ ସାମାଜିକ ଦୁର୍ଗୁଣ । ଅର୍ଥାତ୍ ସମାଜ ଭିତରେ ବ୍ୟକ୍ତିଙ୍କ ଗଢ଼ିଉଠିଲାବେଳେ ଅନ୍ୟାନ୍ୟ ସାମାଜିକ ଗୁଣ ଦୁର୍ଗୁଣ ସାଙ୍ଗରେ ଅପରାଧ ପ୍ରବୃତ୍ତି ମଧ୍ୟ ଗଢ଼ି ଉଠେ । ଅନ୍ୟାନ୍ୟ ଜନ୍ମଗତ ପ୍ରବୃତ୍ତି ସହିତ ଏହାର କୌଣସି ସମ୍ପର୍କ ନାହିଁ । ଯେଉଁମାନେ ଏହାକୁ ସମର୍ଥନ କରି ସାମାଜିକ ଦୁର୍ଗୁଣ ବୋଲି ଧରିନେବାକୁ ନାରାଜ, ସେମାନଙ୍କ ମତରେ ଏହା ଗୋଟିଏ ବଂଶାନୁକ୍ରମିକ ଗୁଣ । ତେଣୁ ଯେତେ ଚେଷ୍ଟା କଲେ ମଧ୍ୟ ଅପରାଧୀର ସନ୍ତାନ ଅପରାଧ କରିବାପାଇଁ ବ୍ୟାକୁଳ ହୋଇଉଠିବା ସ୍ୱାଭାବିକ । ଭଦ୍ରଲୋକର ସନ୍ତାନ ଭଦ୍ରଲୋକ ହୋଇ ରହିବ— ଅପରାଧୀ ଶେଷ ପର୍ଯ୍ୟନ୍ତ ଅପରାଧୀ ହିଁ ରହିବ—ପ୍ରକୃତିର ଏ ନିୟମକୁ ବଦଳାଇବା ସହଜ କଥା ସମ୍ଭବ ନୁହେଁ—ଏ ପ୍ରକାର ତଥ୍ୟ ସମ୍ବନ୍ଧରେ ମଧ୍ୟ ସେମାନେ ବହୁ ଯୁକ୍ତି ବାଢ଼ନ୍ତି । କିନ୍ତୁ କାଳକ୍ରମେ ଏ ପ୍ରକାର ଯୁକ୍ତି ବିରୁଦ୍ଧରେ ବହୁତ ବେଶି ଗବେଷଣାତ୍ମକ ତଥ୍ୟ ମିଳିଲାଣି ଏବଂ ଏହାର ସପକ୍ଷରେ ଥିବା ଲୋକଙ୍କ ସଂଖ୍ୟା କମି-ଆସିଲାଣି ।

ବର୍ଣ୍ଣବିଦ୍ୱେଷ, ଦଳବିଦ୍ୱେଷ ଓ ଜାତିଗତ ବଡ଼ିମା ପରି ଏହା ମଧ୍ୟ କେତେକଙ୍କଠାରେ ଗୋଟିଏ ପ୍ରକାର ଅଯୌକ୍ତିକ ବିଦ୍ୱେଷ

ବୋଲି ପ୍ରମାଣିତ ହେଉଛି । କିନ୍ତୁ ବର୍ଷ ତଳେ ଦଳେ ଶ୍ୱେତାଙ୍ଗ ବୈଜ୍ଞାନିକ ବହୁ ଯୁକ୍ତିର ନଜିର ଦେଖାଇ ପ୍ରମାଣ କରିବାକୁ ଚେଷ୍ଟା କଲେ ଯେ, ଧଳାଚମଡ଼ା ଥିବା ଲୋକେ କଳାଲୋକଙ୍କଠାରୁ ବୁଦ୍ଧି, ଦକ୍ଷତା ଓ ଅନ୍ୟାନ୍ୟ ଉଚ୍ଚ ଗୁଣରେ ଶ୍ରେଷ୍ଠତର । ୟୁରୋପର, ବିଶେଷତଃ ଇଂଲଣ୍ଡର, କେତେକ ପ୍ରାଣୀବୈଜ୍ଞାନିକ, ନୃତତ୍ତ୍ୱବିତ୍, ଐତିହାସିକ ଓ ରାଜନୀତିଜ୍ଞ ଏହି ତଥ୍ୟଟିକୁ ବହୁ କଷ୍ଟରେ ପ୍ରମାଣ କରିବାକୁ ଚେଷ୍ଟାକଲେ; କିନ୍ତୁ ତା'ର ଶେଷ ପରିଣତି ହେଲା, ହିଟଲରଦ୍ୱାରା ଅନୁପ୍ରାଣିତ ନାତ୍ସି ବୈଜ୍ଞାନିକ-ମାନଙ୍କଦ୍ୱାରା । ସେମାନେ ଶେଷରେ କହିବାକୁ ଆରମ୍ଭ କଲେ ଯେ, ପୃଥିବୀରେ ଗୋରାଲୋକେ ଯେ କେବଳ ଶ୍ରେଷ୍ଠ ସେତିକି ନୁହେଁ, ତାଙ୍କ ଭିତରେ ସର୍ବଶ୍ରେଷ୍ଠ ଜାତି ହେଉଛନ୍ତି ଜର୍ମାନୀର ଆର୍ଯ୍ୟମାନେ । ଏମାନେ ସମସ୍ତ ପ୍ରକାର ପ୍ରଶଂସନୀୟ ଗୁଣରେ ପୃଥିବୀର ଅନ୍ୟାନ୍ୟ ଜାତି ଅପେକ୍ଷା ଶ୍ରେଷ୍ଠତମ । ତେଣୁ ସେମାନଙ୍କର ହିଁ ପୃଥିବୀ ଜୟ କରିବାର ଅଧିକାର ଅଛି । ଏ ପ୍ରକାର ଯୁକ୍ତି ଫଳରେ ଇଂରେଜ, ୟୁରୋପିୟାନ୍ ଓ ଆମେରିକାନ୍ ବୈଜ୍ଞାନିକଙ୍କର ନିଦ ଭାଙ୍ଗିଲା ଏବଂ କାଳକ୍ରମେ ବୈଜ୍ଞାନିକମାନେ ଏ ପ୍ରକାର ଭୁଲ ବୁଝିପାରିଲେ ।

ବର୍ତ୍ତମାନ ପ୍ରକୃତିଗତ ଗୁଣ ଦୁର୍ଗୁଣ ଲାଗି ଜାତି କିମ୍ବା ବର୍ଣ୍ଣଗତ ବୈଷମ୍ୟ ଆଉ ବୈଜ୍ଞାନିକ ତଥ୍ୟ ହିସାବରେ ଗୃହୀତ ହୋଇପାରୁନାହିଁ । ତା ସଙ୍ଗେ ସଙ୍ଗେ ଅପରାଧ କରିବା ପ୍ରବୃତ୍ତିକୁ କେତେକ ବ୍ୟକ୍ତି ବା ଦଳର ଜନ୍ମଗତ ପ୍ରବୃତ୍ତି ବୋଲି ବିଶ୍ୱାସ କରୁଥିବା ବୈଜ୍ଞାନିକଙ୍କ ସଂଖ୍ୟା ମଧ୍ୟ କମିଯାଉଛି । ବର୍ତ୍ତମାନ ଯେଉଁମାନେ ଏଥିରେ ବିଶ୍ୱାସ କରନ୍ତି, ସେମାନେ ଯେ କୌଣସି ଯୁକ୍ତିସଙ୍ଗତ ତଥ୍ୟ ଉପରେ ନିଜର ବକ୍ତବ୍ୟକୁ ପ୍ରତିଷ୍ଠିତ କରି ଏହା ପ୍ରତିପାଦିତ କରି ଥାଆନ୍ତି, ତା ନୁହେଁ—ଏହା ସେମାନଙ୍କର

ବିଦ୍ୱେଷମୂଳକ ଦୃଢ଼ଧାରଣା । କିନ୍ତୁ ଏହି ବ୍ୟକ୍ତିଗତ ଧାରଣାସହିତ ବୈଜ୍ଞାନିକ ତଥ୍ୟର କୌଣସି ସମ୍ପର୍କ ନାହିଁ ବୋଲି ଜଣାଯାଏ । ସାଧାରଣତଃ ସମାଜର କେତେକ କୁଳାଭିମାନୀ ତଥାକଥିତ କୁଳୀନମାନେ ଏ ପ୍ରକାର ମତର ବିଶେଷ ପକ୍ଷପାତୀ ଥିବାର ଜଣାଯାଏ । ସେମାନେ କଳ୍ପନା କରିପାରନ୍ତି ନାହିଁ ଯେ, ତାଙ୍କ ବଂଶର ଓ ପରିବାରର ପୁଅ ଝିଅମାନେ କେବେହେଲେ ରାସ୍ତାର ମାଗିଖିଆଙ୍କ ପରି ଏଭଳି ଘୃଣ୍ୟ କାମ କରିପାରିବେ ଏବଂ ସାଙ୍ଗେ ସାଙ୍ଗେ ମଧ୍ୟ କଳ୍ପନା କରିପାରନ୍ତି ନାହିଁ ଯେ, ଜଣେ ଜେଲ୍‌ରେ ଥିବା ଅପରାଧୀର ପୁଅ କିପରି ତାଙ୍କର ପୁଅ ସହିତ ବଂଶାନୁକ୍ରମିକ ପ୍ରକୃତିଗତ ଗୁଣରେ ସମାନ ହୋଇ ପାରିବ । ଅପରାଧୀର ପୁଅ ନିଶ୍ଚୟ ଅପରାଧୀ ହୋଇ ଜନ୍ମ ହେବ—ଆଉ ଭଦ୍ରଲୋକର ପୁଅ ଭଦ୍ରଲୋକ ହିଁ ହେବ—'ଗୃହଘରର ପୁଅ ଗୃହ, ଘାଟଘରର ପୁଅ ଘାଟ' —ଏହା ପ୍ରକୃତିଗତ ନୁହେଁ, ଜନ୍ମଗତ ବୋଲି ସେମାନଙ୍କର ମତ । ସେମାନଙ୍କର ନିଜ ଘର ଗୃହଘର କି ନା, ତେଣୁ ଏ ତଥ୍ୟଟି ସେମାନଙ୍କର ଖୁବ୍ ପସନ୍ଦ ହୁଏ । କିନ୍ତୁ ଗବେଷଣା କରି ଦେଖିଲେ ଜଣାଯାଏ ଯେ, କେତେକ ଅସ୍ୱାଭାବିକ ପାରିବାରିକ ସମ୍ପର୍କ ଓ ସାମାଜିକ ବିଭ୍ରାଟ ଯୋଗୁଁ ଭଦ୍ର ଓ ଧନୀ ପରିବାର ଭିତରେ ମଧ୍ୟ ବହୁତ ପ୍ରକାର ଅସାମାଜିକ ଅପରାଧ ଦେଖାଦେଇଥାଏ । ଏହା ଏତେ ବେଶି ଆଖିରେ ନ ପଡ଼ିବାର କାରଣ ହେଲା ଏମାନଙ୍କର ଅଭିଭାବକମାନେ ସାଧାରଣତଃ ପ୍ରଭାବଶାଳୀ ଲୋକ ହୋଇଥିବାରୁ ଏମାନଙ୍କର ପିଲାମାନେ ପୋଲିସ୍ର ନଜରକୁ ସହଜରେ ଆସନ୍ତି ନାହିଁ ଏବଂ ଆସିଲେ ମଧ୍ୟ ସେମାନଙ୍କୁ ସହଜରେ ଜେଲ୍‌ଦଣ୍ଡ ଭୋଗିବାକୁ ପଡ଼େନାହିଁ ।

ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ଅପରାଧ କରିବାର ଇଚ୍ଛା ପିଲାଦିନରୁ ପାରିବାରିକ ପରିସ୍ଥିତି ଓ ସାମାଜିକ ପରିବେଶ ଭିତର ଦେଇ

କ୍ରମେ ବଢ଼ିଉଠେ—ଜନ୍ମଗତ ପ୍ରବୃତ୍ତିଗୁଡ଼ିକ ସହିତ ଏହାର କୌଣସି ସମ୍ପର୍କ ନାହିଁ । ଜଣେ ଦାଗୀର ପିଲାକୁ ଯଦି ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସ୍ୱାସ୍ଥ୍ୟକର ପରିବେଶ ଭିତରେ ନେଇ ରଖାଯାଏ, ତା'ହେଲେ ସେ ତା ବାପ ପରି ଅପରାଧୀ ହେବାର କୌଣସି ଯୁକ୍ତି ସଙ୍ଗତ କାରଣ ନାହିଁ । ଜଣେ ଭଦ୍ରବ୍ୟକ୍ତିର ପିଲାକୁ ଯଦି ଚୋର ଡକାୟତ ଦଳ ଭିତରେ ଆଣି ରଖାଯାଏ, ତା'ହେଲେ ସେ ସେମାନଙ୍କ ପରି ବ୍ୟବହାର କରିବାର ସମ୍ଭାବନା ବହୁତ ବେଶି । ମନୋବିଜ୍ଞାନ ଓ ଅନ୍ୟାନ୍ୟ ସମାଜ ବିଜ୍ଞାନର କୌଣସି ତଥ୍ୟ ପଦାର୍ଥବିଜ୍ଞାନର ଗାଣିତିକ ତଥ୍ୟ ପରି ସବୁକ୍ଷେତ୍ରରେ ସମାନ ଭାବରେ ହିସାବ ଅନୁସାରେ ଶତକଡ଼ା ଶହେ କିମ୍ବା ଅନେକ୍ଷତ ପରିମାଣରେ ଠିକ୍ ହୋଇପାରିବ ନାହିଁ । ତଥାପି ଏତିକି ନିଃସନ୍ଦେହରେ କହିହେବ ଯେ, ଏ ପ୍ରକାର ପରିସ୍ଥିତିରେ ଏହିପରି ଘଟଣା ପ୍ରାୟ ଦେଖାଯିବ; କିନ୍ତୁ ସବୁବେଳେ ନୁହେଁ, ଶତକଡ଼ା ପାଞ୍ଚ ଦଶ ଘଟଣାରେ ଏହା ଭିନ୍ନ ରକମ ହେବାର ସମ୍ଭାବନା ଅଛି; କିନ୍ତୁ ଅଧିକାଂଶ କ୍ଷେତ୍ରରେ ଯେ ତାହା ଘଟିବ ସେଥିରେ ସନ୍ଦେହ ନାହିଁ । ସେହି ଦୃଷ୍ଟିରୁ ଲୋକର ପରିସ୍ଥିତି ଓ ପରିବେଶରୁ ତାର ହାବଭାବ, ଗୁଣବୁଦ୍ଧି, ସାମାଜିକ ଗୁଣ ଦୁର୍ଗୁଣ ବିଷୟରେ ବହୁତ କଥା କହିହେବ । ବର୍ତ୍ତମାନ ଯେତେକ ଅପରାଧ ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା ହେଉଛି, ତାହା ଏହି ମୂଳ ମତ ଅନୁସାରେ ପରିଚାଳିତ ହେଉଛି କହିଲେ ଚଳେ । ସାମାଜିକ ପରିସ୍ଥିତିର ପ୍ରଭାବ ଛଡ଼ା ଆଉ କେତେକ ମନସ୍ତାତ୍ତ୍ୱିକ କ୍ରିୟା ପ୍ରକ୍ରିୟା କାମ ଯେ ନ କରୁଛି ତା ନୁହେଁ, କିନ୍ତୁ ତାହା ସମ୍ପୂର୍ଣ୍ଣ ଭାବରେ ଚାରିତ୍ର୍ୟଗତ ବୈଶିଷ୍ଟ୍ୟ ପ୍ରଭାବିତ ହେଉ ନ ଥିଲେ ସୁଦ୍ଧା ତାହାକୁ ଜନ୍ମଗତ କିମ୍ବା ବଂଶାନୁଗତ ବୋଲି କହିବା ସପକ୍ଷରେ ମଧ୍ୟ କୌଣସି ଯୁକ୍ତି ନାହିଁ ।

ତେବେ ଯାହାହେଉ, ପାରିବାରିକ, ଅର୍ଥନୈତିକ, ପରିସ୍ଥିତିଗତ, ସାଂସ୍କୃତିକ ଓ ଅନ୍ୟାନ୍ୟ ସାମାଜିକ ପରିବେଶ ସମ୍ଭୂତ ମାନସିକ କ୍ରିୟା ପ୍ରତିକ୍ରିୟାରୁ ଉଦ୍ଭୂତ ଅପରାଧ ମନୋବୃତ୍ତିର ମନସ୍ତାତ୍ତ୍ୱିକ ଉତ୍ପତ୍ତି, ବିକାଶ ଓ ଚିକିତ୍ସା ବିଷୟରେ ଆଲୋଚନା କରାଯାଉ ।

---

# ଅପରାଧ ଚିକିତ୍ସାରେ ନୂତନ ଦୃଷ୍ଟିକୋଣ

ପ୍ରାୟ ଶହେ ବର୍ଷ ତଳେ ଇଂଲଣ୍ଡ ପରି ସଭ୍ୟ ଦେଶରେ ମଧ୍ୟ ଅଳ୍ପବୟସ୍କ ଅପରାଧୀକୁ ଖୁବ୍ କଡ଼ା ଦଣ୍ଡ ଦିଆଯାଉଥିଲା । ପ୍ରତ୍ୟେକ ପାପର ଉପଯୁକ୍ତ ପ୍ରାୟଶ୍ଚିତ୍ତ ହେବା ମତରେ ଛୋଟ ବଡ଼ ପ୍ରତ୍ୟେକ ଅପରାଧୀକୁ ସମାନ ଦଣ୍ଡ ଦିଆଯାଉଥିଲା ଏବଂ ଅପରାଧର ଗୁରୁତ୍ୱ ତୁଳନାରେ ଶାସ୍ତିବିଧାନ ଟିକେ ବେଶି ହେଉଥିଲା । ଗତ ଶତାବ୍ଦୀରେ ଇଂଲଣ୍ଡ କାହିଁକି ପ୍ରତ୍ୟେକ ଦେଶରେ ସାମାନ୍ୟ ସାମାନ୍ୟ ଅପରାଧ ପାଇଁ ବେଶି କଡ଼ା ଦଣ୍ଡବିଧାନ ଥିଲା । ୧୮୩୩ ମସିହାରେ ଇଂଲଣ୍ଡରେ ଗୋଟିଏ ନଅ ବର୍ଷର ପିଲାକୁ ଗୋଟିଏ ଦୋକାନ ଭିତରେ ବାଡ଼ି ଗଳେଇ ଦୁଇଅଣା ଦାମର ରଙ୍ଗ ଚୋରି କରିବା ପାଇଁ ଚେଷ୍ଟା କରିଥିବା ଅପରାଧଯୋଗୁ, ଫାଶି କାଠରେ ଝୁଲାଇ ଦିଆ ହୋଇଥିଲା । ସେ ଯୁଗରେ ଭାରତରେ ମଧ୍ୟ ବହୁତ କମ୍ ଦୋଷରେ ସୁଦ୍ଧା ଗରମ ତେଲରେ ହାତ ବୁଡ଼ାଇ ଦେବା, ନକକୁ ଫୋଡ଼ ମାରିଦେବା ଭଳି ବହୁ ବର୍ବରୋଚିତ ଶାସ୍ତିବିଧାନ କରାଯାଉଥିଲା । ସାଧାରଣ ଲୋକଙ୍କୁ ଉପଯୁକ୍ତ ଶିକ୍ଷା ଓ ଅପରାଧୀକୁ ଭବିଷ୍ୟତ ଅପରାଧରୁ ନିବୃତ୍ତ କରିବା ଉଦ୍ଦେଶ୍ୟରେ ଦୋଷୀକୁ ଏତେ ବେଶି କଡ଼ା ଦଣ୍ଡ ଦିଆଯାଉଥିଲା । କିନ୍ତୁ ପରେ ଦେଖାଗଲା ଯେ ଯେତେ କଡ଼ା ଦଣ୍ଡ ଦିଆଗଲେ ସୁଦ୍ଧା ସମାଜ ଭିତରେ ଅପରାଧ ସଂଖ୍ୟା ବଢ଼ିବାରେ ଲାଗିଲା ସିନା କମିଲା ନାହିଁ । ଯେଉଁ ଦେଶରେ ଫାଶିଦେବାର ବ୍ୟବସ୍ଥା ଅଛି ସେ ଦେଶର ନରହତ୍ୟା ସଂଖ୍ୟା ଫାଶି ବ୍ୟବସ୍ଥା ନଥିବା ଦେଶର ନରହତ୍ୟା ସଂଖ୍ୟା ଅପେକ୍ଷା

ବେଶି । ବରଂ ଦେଖାଯାଉଛି ଯେ ଯେଉଁ ଦେଶର ଶାସ୍ତିବିଧାନ ଯେତେ ବେଶି କଠୋର ଓ ଯନ୍ତ୍ରଣାଦାୟକ ସେ ଦେଶରେ ପୈଶାଚିକ ଅପରାଧ ସେତେ ବେଶି ଏବଂ ଦୋଷୀକୁ ଧରିବା ଲାଗି ସେଠି ବେଶି ଖରଚ ହୁଏ; କାରଣ ଦୋଷୀ ବହୁତ ବେଶି ଲୁଚିବାକୁ ଚେଷ୍ଟା କରେ । ତା ଅର୍ଥ ଶାସ୍ତିର ମାତ୍ରାଧିକ୍ୟ ଯୋଗୁଁ ଦୋଷ କମେ ନାହିଁ । ଅପରାଧ କମିବା ଲାଗି ଯେଉଁ ପ୍ରକାର ମନୋବିଜ୍ଞାନସମ୍ମତ ପନ୍ଥା ଅବଲମ୍ବନ କରିହେବା ଉଚିତ, ତା ନହେଲେ ଅପରାଧ ମୂଳରେ କାମ କରୁଥିବା କାରଣଗୁଡ଼ିକର ନିରାକରଣ ଅସମ୍ଭବ ବୋଲି କ୍ରମେ କ୍ରମେ ସମାଜବିତ୍‌ମାନେ ଉପଲବ୍ଧି କଲେ । ଏହି ମନସ୍ତାତ୍ତ୍ୱିକ ଉପଲବ୍ଧି ଗତ ଅର୍ଦ୍ଧ-ଶତାବ୍ଦୀ ଭିତରେ ବହୁ ଲୋକଙ୍କଠାରେ ଓ ବହୁ ଦେଶରେ ଦେଖା ଦେଇଛି । ବର୍ତ୍ତମାନ ସଭ୍ୟ ଦେଶମାନଙ୍କରେ ଅପରାଧୀମାନଙ୍କୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କରାହେଉଛି, ବିଶେଷତଃ ଅଳ୍ପ ବୟସ୍କ ଅପରାଧୀଙ୍କୁ କେବଳ ମନସ୍ତାତ୍ତ୍ୱିକ ପ୍ରଣାଳୀରେ ଆୟତ୍ତ କରିବାପାଇଁ ଚେଷ୍ଟା ଚାଲିଛି ।

ଏ ପ୍ରକାର ଚେଷ୍ଟା ମୂଳରେ ଦୁଇଟି ବଳିଷ୍ଠ ଯୁକ୍ତି କାମ କରୁଛି । ପ୍ରଥମଟି ହେଉଛି ଯେ ପ୍ରତ୍ୟେକ ପ୍ରାପ୍ତବୟସ୍କ ଅପରାଧୀ କମ୍ ବୟସରୁ ହିଁ ଅପରାଧ ଆରମ୍ଭ କରେ, ଅର୍ଥାତ୍ ସେମାନଙ୍କର ପ୍ରଥମ ଅପରାଧ ପିଲାଦିନୁ ଆରମ୍ଭ ହୋଇଥାଏ । ଯଦି ଅଳ୍ପବୟସ୍କ ଅପରାଧୀଙ୍କୁ କୌଣସିମତେ ସୁଧାରିହେବ, ତା'ହେଲେ ଭବିଷ୍ୟତରେ ବଡ଼ ବଡ଼ ଦାଗୀଙ୍କ ସଂଖ୍ୟା ଯଥେଷ୍ଟ ପରିମାଣରେ କମିଯିବାର ସମ୍ଭାବନା । ଇଂଲଣ୍ଡର ସୁପ୍ରସିଦ୍ଧ ଅପରାଧମନୋବିତ୍ ସାର ସିରିଲ୍‌ବାର୍ଟଙ୍କ ଗବେଷଣାପ୍ରସୂତ ତଥ୍ୟର ଫଳରେ ଜଣାଯାଇଛି ଯେ, ୯ ବର୍ଷ କିମ୍ବା ତା'ଠାରୁ କମ୍ ବୟସର ଅପରାଧୀଙ୍କ ଭିତରୁ ଶତକଡ଼ା ସତୁରି,

୯ ଠାରୁ ୧୪ ବର୍ଷ ବୟସର ଅପରାଧୀଙ୍କ ଭିତରୁ ଶତକଡ଼ା ୫୬, କିନ୍ତୁ ବୟସ୍କ ଅପରାଧୀଙ୍କ ଭିତରୁ ଶତକଡ଼ା ମାତ୍ର ବତିଶ ଜଣଙ୍କୁ ନାନା ଉପାୟରେ ସୁଧାର ହେଉଛି । ତେଣୁ ଅଳ୍ପ ବୟସ୍କ ଅପରାଧୀଙ୍କ ଚିକିତ୍ସା ବିଷୟରେ ସେ ଯେତେ ଆଶାବାଦୀ, ବୟସ୍କ ଅପରାଧୀଙ୍କ ଚିକିତ୍ସା ବିଷୟରେ ତାଙ୍କର ସେତେ ବେଶି ଆସ୍ଥା ନାହିଁ । ବିଶେଷରେ ଅଳ୍ପ ବୟସ୍କ ଅପରାଧୀଙ୍କୁ ଚିକିତ୍ସା କରିବା ଅପେକ୍ଷାକୃତ ସହଜ । ସେମାନଙ୍କର ଜୀବନ ଖୁବ୍ ବେଶି ଜଟିଳ ହୋଇ ନ ଥାଏ । ତେଣୁ ସେମାନଙ୍କର ମାନସିକ ଚିନ୍ତାଧାରାକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିବା ସେତେ ବେଶି କଷ୍ଟସାଧ୍ୟ ହୁଏ ନାହିଁ । ସେ ଅପରାଧ କରିବାକୁ ଆରମ୍ଭ ମାତ୍ର କରିଥାଏ—ଏହା ତା'ର ସୁଦୃଢ଼ ଅଭ୍ୟାସରେ ପରିଣତ ହୋଇ ନଥାଏ—ଆତ୍ମ-ବିଶ୍ୱାସ ଓ ଆତ୍ମସମ୍ମାନ ଜ୍ଞାନ ସମ୍ପୂର୍ଣ୍ଣ ଭାବେ ଲୋପ ପାଇ ନଥାଏ—ଅନ୍ୟ କୌଣସି କାମ କରିବାର ଦକ୍ଷତା ସଙ୍କୁଚିତ ହୋଇ ନ ଥାଏ କି ତାର ମାନସିକ ଚିନ୍ତାଧାରା ପୂର୍ବାପୂର ବିକୃତ ହୋଇ ନଥାଏ ଏବଂ ସମାଜ ପ୍ରତି ଖୁବ୍ ବେଶି ବିଦ୍ୱେଷ ତା ମନରେ ସୃଷ୍ଟି ହୋଇ ନ ଥାଏ । ତା ବିଷୟରେ ବହୁ ଖବର ତା'ର ପିତାମାତା ଓ ଅନ୍ୟାନ୍ୟ ଲୋକଙ୍କଠାରୁ ସଂଗ୍ରହ କରିହୁଏ ଏବଂ ତା'ର ଭାବନା ସେତେ ବେଶି ବିକୃତ ହୋଇ ନ ଥିବାରୁ କେତେଗୁଡ଼ାଏ ମନସ୍ତା-ତ୍ତ୍ୱିକ ପରୀକ୍ଷା ତା ଉପରେ ସହଜରେ କରିହୁଏ । ବିଶେଷତଃ ଗତ କେତେବର୍ଷ ଭିତରେ ଶିଶୁ ମନୋବିଜ୍ଞାନ ଏତେ ବେଶି ଆଗେଇ ଯାଇଛି ଯେ; ଅଳ୍ପ ବୟସ୍କ ଅପରାଧୀଙ୍କୁ ବୁଝିବା ଏବଂ ସେମାନଙ୍କୁ ବୁଝାଇ ସୁଝାଇ ଠିକ୍ ରାସ୍ତାକୁ ଆଣିବା ଅନେକ ପରିମାଣରେ ସମ୍ଭବ ହୋଇପାରୁଛି । ଏହି ସବୁ କାରଣରୁ ଅନେକ ଦେଶରେ ଅଳ୍ପ ବୟସ୍କ ଅପରାଧୀଙ୍କ ପାଇଁ ବହୁତ ଅର୍ଥ ଓ ସମୟ ବ୍ୟୟିତ ହେଉଛି ।

ଇଂଲଣ୍ଡର ବିଶିଷ୍ଟ ଅପରାଧ-ବିଜ୍ଞାନୀମାନଙ୍କ ମତରେ ଅଳ୍ପ ବୟସ୍କ ଅପରାଧୀ ପାଇଁ ଟଙ୍କାଏ ଖର୍ଚ୍ଚ କଲେ ଦେଶର ଅପରାଧ ନିୟନ୍ତ୍ରଣ ଓ ନିରାକରଣ ବାବଦରେ ଅନ୍ତତଃ ଦଶଟଙ୍କା ଖର୍ଚ୍ଚ କମିଯିବାର କଥା । ଏହାର ଅର୍ଥନୈତିକ ଦିଗ ଛାଡ଼ିଦେଲେ ମଧ୍ୟ ସମାଜର ମଙ୍ଗଳ ଦୃଷ୍ଟିରୁ, ପାରିବାରିକ ସୁଖଶାନ୍ତି ଓ ବ୍ୟକ୍ତିତ୍ୱର ପୂର୍ଣ୍ଣ ଅଭିବ୍ୟକ୍ତି ଦୃଷ୍ଟିରୁ ଏହାର ନୈତିକ ମୂଲ୍ୟ ବହୁତ ବେଶି ବୋଲି ସମାଜବିତ୍‌ମାନେ ମନେକରନ୍ତି । ଏହି ଦୃଷ୍ଟିରୁ ଏ କ୍ଷେତ୍ରରେ ବୈପ୍ଳବିକ ଆନ୍ଦୋଳନ ସବୁ ଦେଶରେ ଦେଖାଦେଲଣି । ଆମ ଦେଶରେ ଏହା ଧୀର ମନ୍ଥର ଗତିରେ ଚାଲିଥିଲେ ସୁଦ୍ଧା ଏହାକୁ କେତେକ ପଣ୍ଡିତମ୍ମନ୍ୟ ଶିକ୍ଷାବିତ୍ ଓ ନ୍ୟସ୍ତସ୍ୱାର୍ଥ ସମାଜସଂସ୍କାରକଙ୍କୁ ଛାଡ଼ିଦେଲେ ଅନ୍ତତଃ ନୀତି ଦୃଷ୍ଟିରୁ ଅଧିକାଂଶ ଶିକ୍ଷାବିତ୍ ଓ ସମାଜ ସଂସ୍କାରକ ଏହି ଆଦର୍ଶକୁ ଗ୍ରହଣ କରିନେଲେଣି ।

ଜଣେ ମନସ୍ତତ୍ତ୍ୱବିତ୍ କହିଥିଲେ ଯେ ଯେତେକ ଡାକ୍ତରଖାନାର ରୋଗୀ ସେମାନଙ୍କୁ ଜେଲ୍‌ରେ ରଖିବା ଉଚିତ ଓ ଯେତେକ ଜେଲ୍‌ର କଏଦୀ ତାଙ୍କୁ ଡାକ୍ତରଖାନାକୁ ଚିକିତ୍ସା ପାଇଁ ପଠାଇଦେବା ଉଚିତ—ଏ ଉକ୍ତିରେ ବହୁତ ସତ୍ୟତା ଅଛି । ଅନେକ ରୋଗ ଆମର ଅସାବଧାନତା ଯୋଗୁଁ ହୋଇଥାଏ । ତେଣୁ ସେଥିପାଇଁ ଆମେ ନିଶ୍ଚୟ ଦାୟୀ; କିନ୍ତୁ ଯେ ଅପରାଧୀ ସେ ତା'ର ଅପରାଧ ପାଇଁ ସବୁ ସମୟରେ ଦାୟୀ ନୁହେଁ । ସେଥିପାଇଁ ଦାୟୀ ତା'ର ପାରିବାରିକ ପରିବେଶ, ପିତାମାତା ଓ ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନଙ୍କ ବ୍ୟବହାର, ଅର୍ଥନୈତିକ ଅବସ୍ଥା ଓ ତାର ଚତୁର୍ଦ୍ଦିଗରେ ଘେରିରହିଥିବା ସାମାଜିକ ପରିବେଶ । ଏସବୁ ଶକ୍ତିର ପାରସ୍ପରିକ ଘାତ ପ୍ରତିଘାତ ଫଳରେ ତା ମନରେ ଯେଉଁ କ୍ରିୟା ପ୍ରତିକ୍ରିୟା ସୃଷ୍ଟି ହୁଏ, ସେଥିପାଇଁ ସେ ଅପରାଧ କରେ ଏବଂ ତାକୁ ନିୟନ୍ତ୍ରଣ

କରିବା ତା ପକ୍ଷରେ ଅନେକ ସମୟରେ ସହଜସାଧ୍ୟ ନୁହେଁ । ନିୟନ୍ତ୍ରଣ କରିପାରୁଥିବା ବ୍ୟକ୍ତି ପ୍ରଶଂସନୀୟ ହୋଇପାରେ, କିନ୍ତୁ ଏହି କୁଟିଳ ବ୍ୟୂହ ଭିତରେ ଜଣେ ଜଣେ ପଶିଯିବା ଅସ୍ୱାଭାବିକ କିମ୍ବା ଅକ୍ଷମଣୀୟ ନୁହେଁ । ସେ ଅନେକ ସମୟରେ ସମ୍ଭବତଃ ଅପରାଧ କରିଥାଏ ।

ଯେଉଁ ସମାଜର ସଂସ୍ଥା ଯେପରି, ତା'ର ଅପରାଧୀମାନେ ମଧ୍ୟ ସେହିପରି । କେତେକ ସମାଜବିତ୍ କହନ୍ତି ଯେ, କେତେଜଣ ଅପରାଧୀଙ୍କର କାର୍ଯ୍ୟକଳାପ ଓ ମନୋଭାବ ବିଶ୍ଳେଷଣ କଲେ ସେହି ସମାଜ ବିଷୟରେ ଗୋଟିଏ ମୋଟାମୋଟି ଧାରଣା କରିହେବ; କାରଣ ସମାଜର ସମସ୍ତ ଦୁର୍ଗୁଣ ଏମାନଙ୍କଠାରେ ଦେଖିବାକୁ ମିଳେ । ତେଣୁ ଅସାମାଜିକ ସ୍ପୃହା ଅପରାଧୀମାନଙ୍କ ଜନ୍ମଗତ ମାନସିକ ପ୍ରବୃତ୍ତି ନୁହେଁ କିମ୍ବା ଈଶ୍ୱରଦତ୍ତ ଅଭିଶାପ ବା ରକ୍ତଗତ କଳଙ୍କ ନୁହେଁ, କିମ୍ବା ମୋଟା ମୋଟା ଆଙ୍ଗୁଳି, ଝୁଙ୍କି-ପଡ଼ିଥିବା କାନ୍ଧ, କପାଳରେ ଥିବା ଆବୁ ବା ଜ୍ୟୋତିଃହୀନ ଆଖିର ରାସାୟନିକ ପ୍ରତିକ୍ରିୟା ଯୋଗୁଁ ନୁହେଁ । ଏହା ବିଭିନ୍ନ ଦୁର୍ଗୁଣ ଓ ଅସ୍ୱାଭାବିକ ସାମାଜିକ ସ୍ତର ଦେଇ ଗଢ଼ିଉଠିଥିବା ବିକୃତ ବ୍ୟକ୍ତିର ସ୍ୱାଭାବିକ ବିଦ୍ରୋହ ।

ଅପରାଧୀ କହିଲେ ସାଧାରଣତଃ ଆମେମାନେ ଜେଲ୍‌ଦଣ୍ଡ ଭୋଗିଥିବା ଲୋକଙ୍କୁ ହିଁ ବୁଝୁ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଦେଖିଲେ ଯେଉଁ ବ୍ୟକ୍ତି ଅସାମାଜିକ କାର୍ଯ୍ୟ କରେ ସେ ଅପରାଧୀ । ଶାସ୍ତି ପାଇଲାଭଳି ବହୁ ଅପରାଧ କରି ସୁଦ୍ଧା ଜଣେ ଭଦ୍ରଲୋକର ପୁଅ କୋର୍ଟ କଚେରୀରେ ଶାସ୍ତି ନ ପାଇପାରେ; କିନ୍ତୁ ଜଣେ ଥରେ

ମାତ୍ର ଗୋଟିଏ ସାମାନ୍ୟ ଶ୍ରେଣୀକର ଜେଲ୍‌ଦଣ୍ଡ ହୋଇପାରେ । ଜେଲ୍‌ଦଣ୍ଡ-ପାଇଥିବା ଲୋକ ଆଇନ ଦୃଷ୍ଟିରୁ ଅପରାଧୀ; କିନ୍ତୁ ଯେ ଘରେ ହେଉ ବା ବାହାରେ ହେଉ ଅପରାଧ କରିଥାଏ, ପୋଲିସ ଦୃଷ୍ଟିକୁ ନ ଆସିଲେ ସୁଦ୍ଧା ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେ ନିଶ୍ଚୟ ଅପରାଧୀ ।

---

# ପିଲାମାନେ ଅପରାଧ କାହିଁକି କରନ୍ତି ?

ପିଲାମାନେ ଅଳ୍ପ ବୟସରୁ ଅସାମାଜିକ କାର୍ଯ୍ୟରେ କାହିଁକି ଲିପ୍ତ ହୁଅନ୍ତି—ସେଥିପାଇଁ ନାନା କାରଣ ଅଛି । ସେଥିରୁ ଗୋଟିଏ କାରଣ ହେଉଛି—ପିଲା ପ୍ରତି ବାପା ମା'ଙ୍କର ବ୍ୟବହାର । ଅନେକ ସମୟରେ ବାପ; ମା', ବଡ଼ଭାଇ, ଭଉଣୀ, ଦାଦ, ଖୁଡ଼ୀ ପ୍ରଭୃତି ଅଭିଭାବକମାନେ ପିଲା ପ୍ରତି ବଡ଼ ନିଷ୍ଠୁର ବ୍ୟବହାର କରନ୍ତି । ପିଲାମାନଙ୍କୁ ଟିକିଏ ଟିକିଏ କଥାରେ ମାରିବା, ଗାଳିଦେବା, ଖାଇବାକୁ ନ ଦେଇ ଘରୁ ବାହାର କରିଦେବା ପ୍ରଭୃତି ଘଟଣା ବହୁ କ୍ଷେତ୍ରରେ ଦେଖାଯାଏ । ବାପ ମା' ଯଦି ଗରିବ ଥାନ୍ତି, ତା'ହେଲେ ଭଲ ପ୍ରକୃତିର ବାପ ମା'ମାନେ ମଧ୍ୟ ଚିଡ଼ଚିଡ଼ା ହୋଇଯାଆନ୍ତି! ସେଥିରେ ପିଲାମାନେ ବାଢ଼ିଲାବେଳେ ତାଙ୍କୁ ବୋଧକରିବା ପାଇଁ କୌଣସି ଉପାୟ ନ ଥିବାରୁ ସେମାନଙ୍କୁ ମାରନ୍ତି ବା ଘରୁ ବାହାର କରି ଦିଅନ୍ତି । କିନ୍ତୁ ଅନେକ ଅଭିଭାବକ ଗରିବ ନ ହୋଇ ସୁଦ୍ଧା ଦୁଷ୍ଟ ପ୍ରକୃତିର ଲୋକ ହୋଇଥିବାରୁ ପିଲାମାନଙ୍କ ଉପରେ ଅଯଥା ଅତ୍ୟାଚାର କରନ୍ତି । ବାପ ମା' ଦୁଇଜଣଙ୍କ ଭିତରୁ ଜଣେ ନିଷ୍ଠୁର ପ୍ରକୃତିର ହୋଇଥିଲେ ସୁଦ୍ଧା ପିଲା ପକ୍ଷରେ ତାହା ଯଥେଷ୍ଟ । ସାବତମା' କିମ୍ବା ବାପ ମା' ଛେଉଣ୍ଡ ପିଲାର ଦାଦ ଖୁଡ଼ୀ କିମ୍ବା ଅନ୍ୟାନ୍ୟ ଅଭିଭାବକମାନେ ଏ ପ୍ରକାର ଖରାପ ବ୍ୟବହାର ଅନେକ ସମୟରେ ଦେଖାଇଥାଆନ୍ତି ।

ନିଜ ବାପ, ମା' ଓ ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନଙ୍କଠାରୁ ପିଲାଏ ଚାହାନ୍ତି ସ୍ନେହ, ସହାନୁଭୂତି ଓ ଆଦର ଯତ୍ନ । ଶିଶୁ ଅବସ୍ଥାରେ

ସେମାନଙ୍କର କୋମଳ ମନ ସୁଶିକ୍ଷାର ଛାଞ୍ଚରେ ଗଢ଼ି ଉଠିବା ଦରକାର; କିନ୍ତୁ ସୁଶିକ୍ଷାର ପରିବର୍ତ୍ତେ ପାଏ, ଅଧିକାଂଶ ସମୟରେ ପାରିବାରିକ ଝଗଡ଼ାଝାଞ୍ଜି ହିଁ ଶୁଣିଥାଏ—ଆଦର ପରିବର୍ତ୍ତେ ଅନାଦର ସ୍ନେହ ପରିବର୍ତ୍ତେ ଅତ୍ୟାଚାର। —ତା'ହେଲେ ଶିଶୁ ମନ ଅସ୍ୱାଭାବିକ ଭାବେ କଠିନ ହୋଇପଡ଼େ । ସ୍ନେହ ସହାନୁଭୂତିର ସୁକୋମଳ ସ୍ପର୍ଶରେ ବିକଶି ଉଠିବା ପରିବର୍ତ୍ତେ ତାହା କ୍ରମେ ନିର୍ମମ ବିକୃତ ହୋଇ ପଡ଼େ । ଅନ୍ୟ ପ୍ରତି ଦୟାମାୟା ଦେଖା ଦେବା ପରିବର୍ତ୍ତେ ଘୃଣା ଓ ବିଦ୍ୱେଷ ହିଁ ସୃଷ୍ଟି ହୁଏ । ସେ ଦୟାମାୟାହୀନ ନିଷ୍ଠୁର ଅତ୍ୟାଚାରକୁ ସ୍ୱାଭାବିକ ମାନବିକ ଗୁଣ ହିସାବରେ ଗ୍ରହଣ କରିନିଏ । ତା' ଛଡ଼ା ତା ନିଜର ବ୍ୟକ୍ତିତ୍ୱ ଆତ୍ମଲାଞ୍ଛନା ଓ ଅସମ୍ମାନ ଭିତରେ ଗଢ଼ି ଉଠୁଥିବାରୁ ଅନ୍ୟ ପ୍ରତି ମଧ୍ୟ ତାର ସମ୍ମାନ କିମ୍ବା ଶ୍ରଦ୍ଧା ନ ଥାଏ । ତାର ପ୍ରକୃତି ସେହିପରି ଭାବରେ ଗଢ଼ିଉଠେ । ଏ ପ୍ରକାର ଲୋକ ଯେ ନିଷ୍ଠୁର ଅସାମାଜିକ କାର୍ଯ୍ୟରେ ଆନନ୍ଦ ପାଇବ, ସେଥିରେ ସନ୍ଦେହ କରିବାର କ'ଣ ଅଛି ? ଚୋରି, ଡକାୟତି, ନାରୀହରଣ, ଦଙ୍ଗା ପ୍ରଭୃତି କାର୍ଯ୍ୟରେ ହିଁ ତା'ର ପ୍ରକୃତି ବିକାଶ ହୁଏ । ସେ ଅନେକ ସମୟରେ ଅନାୟାସରେ ସବୁ ପ୍ରକାରର ଖରାପ କାମ କରିପାରେ । ତା'ର କ୍ରୋଧ ଖୁବ୍ ବେଶି ହୁଏ ଏବଂ ଏହା ହଠାତ୍ ଦପ୍‌କରି ଜଳିଉଠେ । ସେ କୌଣସି ନିଷ୍ଠୁର କାମରେ ମଧ୍ୟ ତାର ଦୁର୍ବଳତା ଆସେନାହିଁ । ସେ ଯେପରି ଏହି ସବୁ କାମ ପାଇଁ ଜନ୍ମ ଏବଂ ଏଥିରେ ହିଁ ତା'ର ଜୀବନର ସାର୍ଥକତା । ଏମାନଙ୍କୁ ଦେଖି ଅନେକେ ହୁଏତ ଭାବନ୍ତି ଯେ, ଏ ପ୍ରକାର ପ୍ରକୃତି, ନିଷ୍ଠୁର ଜନ୍ମଗତ କିମ୍ବା ଅଭିଜ୍ଞତାଗତ । ତାହା ପ୍ରକୃତରେ କ୍ରମେ ଅଭିଜ୍ଞତାଗତ ହୋଇଯାଏ; କିନ୍ତୁ ଜନ୍ମଗତ ନୁହେଁ । ସ୍ନେହ କରୁଥିବା ବାପ ମା'; ଭାଇ ଭଉଣୀମାନଙ୍କ ସଙ୍ଗରେ ରହି

ଭଲ ସେମାନଙ୍କ ପରି ଅନ୍ୟାନ୍ୟ ପିଲାମାନେ ମଧ୍ୟ ଶ୍ରେଷ୍ଠ ହୋଇ ପାଆନ୍ତି । ବାପା ମା'ମାନେ ଜଣେ ଶ୍ରେଷ୍ଠ ହୋଇ ନ ଥିଲେ ସୁଦ୍ଧା ସେମାନଙ୍କର ହୃଦୟହୀନ ବ୍ୟବହାର ଏମାନଙ୍କୁ ଶ୍ରେଷ୍ଠ ଉତ୍ସାହିତ କରାଇଦିଏ । ବିବେକ ଯେପରି ବାପ ମା' ଓ ଅନ୍ୟାନ୍ୟ ପରିସ୍ଥିତି ଅନୁସାରେ କ୍ରମେ କ୍ରମେ ଗଢ଼ିଉଠେ, ବିବେକହୀନତା ମଧ୍ୟ ଠିକ୍ ସେହିପରି ଘରର ଦୂଷିତ ପରିବେଶ ଭିତର ଦେଇ ଗଢ଼ି ଉଠେ ।

ଅନେକ ସମୟରେ ବାପ ମା' ଓ ଅନ୍ୟାନ୍ୟ ଅଭିଭାବକମାନେ ପ୍ରକୃତରେ ଅତ୍ୟାଗ୍ରହୀ କିମ୍ବା ନିର୍ଦ୍ଦୟ ନୁହନ୍ତି । ତଥାପି ନାନା କାରଣରୁ ପିଲେ ଭାବେ ଯେ ସେମାନେ ତାକୁ ଭଲ ପାଉ ନାହାନ୍ତି । ଅନେକ ବାପା ସ୍ୱଭାବତଃ ଗମ୍ଭୀର ପ୍ରକୃତିର ଲୋକ କିମ୍ବା ନାନା କାମରେ ବ୍ୟସ୍ତ ଥିବାରୁ ଘରେ ପିଲାମାନଙ୍କ ସଙ୍ଗରେ ବେଶି ସମୟ କଟାଇ ପାରନ୍ତି ନାହିଁ । ଯେତିକି ସମୟ ରୁହନ୍ତି, ସେତିକି ସମୟ କେବଳ ଖାଆନ୍ତି ଶୁଅନ୍ତି କିମ୍ବା ପିଲାଙ୍କୁ ଗାଳି ପଢ଼ାପଢ଼ି କରିବା ପାଇଁ ତାଗିଦା କରନ୍ତି । ନିଜ କାର୍ଯ୍ୟ ନେଇ ସେମାନଙ୍କର ନାନା ଦୁଶ୍ଚିନ୍ତା ଥିବାରୁ ସେମାନେ ଘରେ ହୁଏତ ଚିଡ଼ଚିଡ଼ା ହୁଅନ୍ତି—କଥା କଥାକେ ପିଲାଙ୍କୁ ମାଡ଼ଗାଳି ଦିଅନ୍ତି । କିନ୍ତୁ ତାଙ୍କ ମନ ଭିତରେ ପିଲାଙ୍କ ପ୍ରତି ପ୍ରକୃତ ସ୍ନେହ ଥାଏ—ପିଲାମାନଙ୍କର ଭବିଷ୍ୟତ ପାଇଁ ହିଁ ସେମାନେ ପରିଶ୍ରମ କରୁଥାଆନ୍ତି । ଏପ୍ରକାର ବାପମାନେ ସ୍ୱଭାବତଃ ନିଷ୍ଠୁର ପ୍ରକୃତିର ଲୋକ ନ ହେଲେ ସୁଦ୍ଧା ପିଲାମାନେ ଏମାନଙ୍କୁ ସ୍ନେହହୀନ ଓ ନିର୍ଦ୍ଦୟ ପ୍ରକୃତିର ବୋଲି ଧରିନିଅନ୍ତି । ତାହା ହେଲେ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସେମାନେ ପ୍ରକୃତରେ ନିର୍ଦ୍ଦୟ । ବାପମାନଙ୍କର ଏପରି ବ୍ୟବହାର ଯୋଗୁ ପିଲାମାନଙ୍କ ମନରେ ଭୟଙ୍କର ବିଦ୍ରୋହଭାବ ଦେଖାଦିଏ । ବାପା ଯାହା କରିବାକୁ କହନ୍ତି, ସେମାନେ ରାଗରେ ତାର ଠିକ୍ ଓଲଟା

କରିବାକୁ ଚେଷ୍ଟା କରନ୍ତି । ବାପାଙ୍କର ମୁହଁ ସାମନାରେ ହୁଏତ ସେପରି କରିବାକୁ ସେମାନଙ୍କର ସାହସ ହୁଏ ନାହିଁ, କିନ୍ତୁ ତାଙ୍କ ପଛରେ ସେମାନେ ଠିକ୍ ଓଲଟା କାମ କରନ୍ତି । ବାପ ଯେତେ କହେ ଉପନ୍ୟାସ ନ ପଢ଼ିବାକୁ ତା'ହେଲେ ସେମାନେ ଚୋରେଇ ଲୁଚେଇ ଉପନ୍ୟାସ ପଢ଼ନ୍ତି । ସ୍କୁଲକୁ ଦିନେ ନଯିବାର ଶୁଣି ବାପ ଯଦି ପିଟେ, ତା'ହେଲେ ଅନ୍ୟ ଦିନ ସ୍କୁଲକୁ ସେମାନେ ଜାଣି ଶୁଣି ଯାଆନ୍ତି ନାହିଁ; ଏ ପ୍ରକାର ଚକ୍ରାନ୍ତ କରନ୍ତି ଯେ ବାପ ଯେପରି ସେ କଥା ଆଦୌ ଜାଣି ପାରିବ ନାହିଁ । ଏ ପ୍ରକାର କାମରେ ସେମାନେ ବଡ଼ ଆନନ୍ଦ ପାଆନ୍ତି । ପ୍ରଥମତଃ ବାପର ଅନ୍ୟାୟ ଆଚରଣରେ ସେମାନେ ବିଦ୍ରୋହ କରି ଆନନ୍ଦ ପାଆନ୍ତି । ଦ୍ୱିତୀୟରେ ଖୁବ୍ ବୁଦ୍ଧିର ସହିତ ବାପର ଅଜ୍ଞାତସାରରେ କାମଟି କରିପାରି ଥିବାରୁ ନିଜର ଦକ୍ଷତା ଲାଗି ଆତ୍ମସନ୍ତୋଷ ଲାଭକରନ୍ତି ।

ବାପ ମା'ଙ୍କ ପ୍ରତି ଅବଦମିତ ବିଦ୍ୱେଷଯୋଗୁଁ ସେମାନଙ୍କୁ ଠକାଇବା ଲାଗି ପିଲାମାନେ ନାନାପ୍ରକାର କୌଶଳ କରନ୍ତି। ମିଛ କହନ୍ତି । କ୍ରମେ ଏ ପ୍ରକାର ବ୍ୟବହାର ସେମାନଙ୍କର ଦେହ ସୁଆ ହୋଇଯାଏ । ପ୍ରଥମେ ପ୍ରଥମେ ଏପରି କାମ ଡରି ଡରି କରନ୍ତି, କିନ୍ତୁ ଥରେ ଦୁଇଥର ଏଥିରେ କୃତକାର୍ଯ୍ୟ ହୋଇଗଲେ, ସେମାନଙ୍କର ସାହସ ବଢ଼ିଯାଏ ଏବଂ ତା'ପରେ ଅନାୟାସରେ ଏମାନେ ମିଛ କହି ଯାଆନ୍ତି କିମ୍ବା ନାନା ଉପାୟରେ ଅଭିଭାବକ-ମାନଙ୍କୁ ଠକାଇବାକୁ ଚେଷ୍ଟା କରନ୍ତି । ସେମାନଙ୍କର ବିବେକ ସେହିପରି ଭାବରେ ଗଢ଼ିଉଠେ । ଥରେ ଅଧେ ବାପ ମା'ଙ୍କର ବ୍ୟବହାରରେ ଅସନ୍ତୁଷ୍ଟ ହୋଇ ମିଛ କହିଦେବା ବା ସେମାନଙ୍କୁ ଠକିଦେବା ବଡ଼ କଥା ନୁହେଁ—ଏପରି ପ୍ରାୟ ପ୍ରତ୍ୟେକଙ୍କ

ଜୀବନରେ ଘଟିଥାଏ । କିନ୍ତୁ ବାପ ମା'ଙ୍କ ପ୍ରତି ଯଦି ଗୋଟାଏ ଉଦ୍ଧତ ଅଭିଯୋଗ ପିଲାଙ୍କର ଥାଏ ଏବଂ ସେଥିଲାଗି ସେମାନଙ୍କ ପ୍ରତି ଅନ୍ତରକ୍ତ କ୍ରୋଧ ଓ ଦ୍ୱେଷ ଏମାନଙ୍କର ଅବଚେତନ ମନ-ଭିତରେ ଚକମକ କରୁଥାଏ, ତା'ହେଲେ ଏ ପ୍ରକାର ମାନସିକ ପ୍ରକ୍ରିୟା ପିଲାମାନଙ୍କର ଅଭ୍ୟାସଗତ ହୋଇଯାଇପାରେ ।

ପିଲାମାନେ ପ୍ରଥମେ ବାପ ମା'ଙ୍କ କଥାର ଅପଘାତ କାମ କରନ୍ତୁ—ସେମାନେ ଯେଉଁ ଉପଦେଶ ଦିଅନ୍ତି, ତାର ଠିକ୍ ଓଲଟା କରନ୍ତି ଏବଂ କ୍ରମେ ଏ ପ୍ରକାର ବିଦ୍ରୋହାତ୍ମକ କାମ ସମାଜ ବିରୁଦ୍ଧରେ ନିଅନ୍ତି କରନ୍ତି । ସମାଜର ଅଭିଭାବକମାନେ ପିତାମାତାର ସ୍ଥାନ ଅଧିକାର କରି ବସନ୍ତି । ଯେଉଁ ଯାହା ଜନକ ବିରୁଦ୍ଧରେ ଉଦ୍ଦିଷ୍ଟ ହୋଇଥାଏ, କ୍ରମେ ତାହା ସାରା ସମାଜ ବିରୁଦ୍ଧରେ ଦେଖାଦିଏ; ବରଂ ଅନେକ ସମୟରେ ଏ ପ୍ରକାର ବିଦ୍ରୋହ ଅତି-ମାତ୍ରାରେ ସମାଜ ପ୍ରତି ଦେଖାଦିଏ । ପିଲାମାନେ ବଡ଼ ହେଲା ପରେ ନିଜ ବାପ ମାଆଙ୍କ ପ୍ରତି ସେମାନଙ୍କର ପ୍ରଥମ ରାଗ ବିଷୟରେ ପ୍ରାୟ ଭୁଲିଯାଆନ୍ତି, କାରଣ ଏହା ସାଧାରଣ ବିବେକାନୁମୋଦିତ ନୁହେଁ । ନିଜ ବାପମା'ଙ୍କ ଉପରେ ପ୍ରତିଶୋଧ ନେବା ଚିନ୍ତା ନିତାନ୍ତ ଅପ୍ରୀତିକର ଘଟଣା ହୋଇଥିବାରୁ ସଚେତନ ମନ ଭିତରୁ ସେମାନେ ଏ ପ୍ରକାର ଧାରଣାକୁ ଘୋଡ଼ାଇ ଦିଅନ୍ତି । ଏ ପ୍ରକାର ଆବେଗମୟ ଭାବନାକୁ ସେମାନେ ଅଚେତନ ମନରୁ ବାହାର କରିଦିଅନ୍ତି ସତ, କିନ୍ତୁ ତାହା ଏତେ ଶୀଘ୍ର ମନ ଭିତରୁ ଉଭେଇ ଯାଏନା । ଏହା ଅବଚେତନ ମନ ଭିତରେ ବିବେକହୀନ ରୂପି ହୋଇ ରହିଯାଏ ଏବଂ କ୍ରମେ ଏହା ସମାଜର ଅନ୍ୟାନ୍ୟ ଅଭିଭାବକଙ୍କ ବିରୁଦ୍ଧରେ ପରିଚାଳିତ ହୁଏ । ଏହାକୁ କାର୍ଯ୍ୟକାରଣ ସମ୍ପର୍କ

ସମ୍ବନ୍ଧରେ ସେ ନିଜେ ଜାଣିପାରେନାହିଁ । ଅନେକ ସମୟରେ ଅସାମାଜିକ କାର୍ଯ୍ୟାବଳୀ ଏହି କାରଣରୁ ବ୍ୟକ୍ତିବିଶେଷଠାରେ ଦେଖାଦେଇଥାଏ । ଯେଉଁ ପିଲାମାନଙ୍କର ବାପା ପିଲାପ୍ରତି ଯେତେ କଠୋର ସେହି ପିଲାମାନେ ସମାଜର ଅନ୍ୟମାନଙ୍କ ପ୍ରତି ସେତିକି ବା ତାଠାରୁ ବେଶି କଠୋର ହେବାର ସମ୍ଭାବନା । ଏ ପ୍ରକାର ମାନସିକ ପ୍ରତିକ୍ରିୟା ବହୁ ଲୋକଙ୍କଠାରେ ଦେଖାଯାଏ । ଯେଉଁମାନେ ନିଜର ଦାରିଦ୍ର୍ୟ ଯୋଗୁଁ ପିଲାଦିନେ କଷ୍ଟ ପାଇଥାଆନ୍ତି, ଅନେକ ସମୟରେ ସେମାନେ ବଡ଼ଲୋକ ହେଲେ ଦରିଦ୍ରମାନଙ୍କୁ ଘୃଣା କରନ୍ତି । ଦାରିଦ୍ର୍ୟ ପ୍ରତି ସେମାନଙ୍କର ସ୍ୱାଭାବିକ ଘୃଣା ଦରିଦ୍ରମାନଙ୍କ ପ୍ରତି ଅସ୍ୱାଭାବିକ ଭାବରେ ଆସି ଦେଖାଦିଏ ।

ବାପ ମା'ଙ୍କର ନିର୍ଦ୍ଦୟ ବ୍ୟବହାର ପିଲାଙ୍କ ମନରେ ନାନା ଭାବରେ ପ୍ରତିଫଳିତ ହୁଏ । ବାପ ମା'ଙ୍କଠାରୁ ମାଡ଼ ଖାଇ ପିଲାମାନଙ୍କ ମନରେ ଯେପରି ପ୍ରତିକ୍ରିୟା ସୃଷ୍ଟି ହୁଏ, ଗାଳି ବା କଡ଼ା ବ୍ୟବହାର ଯୋଗୁଁ ମଧ୍ୟ ତଦନୁରୂପ ପ୍ରତିକ୍ରିୟା ଦେଖାଦିଏ । ବାପା ଯାହା କହେ, ଖୁବ୍ ଅନ୍ୟାୟ ବୋଲି ପିଲାର ମନେହେଲେ, ସେ ତା'ର ଠିକ୍ ଓଲଟା କାମ କରିବାକୁ ଚେଷ୍ଟାକରେ ଏବଂ ସମେ ବାପା ଯାହାକୁ ଭଲ ବୋଲି କହେ, ସେ ତାକୁ ମନ୍ଦ ବୋଲି ଭାବେ । ବାପା ପଢ଼ିବାକୁ କହିଲେ ସେ ପଢ଼େ ନାହିଁ — ବାପା ସତକଥା କହିବାକୁ କହିଲେ ସେ ମିଛ କହେ । ବାପା ପଣ୍ଡିତ ହୋଇଥିଲେ ସେ ଛତର ହୁଏ । ବାପା ଓକିଲ ହୋଇଥିଲେ ସେ ଓକିଲଙ୍କୁ ଘୃଣାକରେ — ବାପା ଗୋଟିଏ ଧର୍ମିଷ୍ଠ ରାଜନୀତିକୁ ପସନ୍ଦ କରୁଥିଲେ ସେ ସେହି ଦଳ ବିରୁଦ୍ଧରେ ଠିଆ ହୁଏ — ବାପା ସିନେମା ଅଭିନେତ୍ରୀକୁ ଘୃଣା କରୁଥିଲେ ସେମାନଙ୍କ ମଧ୍ୟରୁ ଜଣକୁ ବାହା ହେବାକୁ ପୁଅର ଝୁଙ୍କ୍ ବଢିଯାଏ । ଏ ପ୍ରକାର ପ୍ରତିକ୍ରିୟା

ନିଜର ବ୍ୟକ୍ତିଗତ ଜୀବନର କାର୍ଯ୍ୟକଳାପ ଭିତରେ ସୀମାବଦ୍ଧ ରହିଲେ, ଏହା ସମାଜ ପକ୍ଷରେ ସେତେ ଅନିଷ୍ଟକାରକ ହୁଏନାହିଁ, କିନ୍ତୁ ଯେବେ ତାହା ବ୍ୟକ୍ତିଗତ ସୀମା ଲଙ୍ଘନକରି ସମାଜ କ୍ଷେତ୍ରରେ ଦେଖାଦେଲେ, ତାହା ଭୟଙ୍କର ହୋଇପଡ଼େ—ଭଦ୍ରଘରର ପିଲାଏ ଭୟଙ୍କର ସାମାଜିକ କଳଙ୍କ ରୂପେ ଦେଖାଦିଅନ୍ତି । ଖୁବ୍ ଗଣ୍ୟମାନ୍ୟ ଓ ଧନୀଲୋକଙ୍କର ପିଲା ହୋଇଥିଲେ—ଉଚ୍ଚଶ୍ରେଣୀର, [illegible] ବେପରୁଆ, ଅଭଦ୍ର ଓ ଦୁଷ୍ଟଚରିତ୍ର ହୋଇ ଗାଡ଼ି ମୋଟର ଶ୍ରେଣୀଙ୍କରେ । କିନ୍ତୁ ଗରିବ ପିଲା ହୋଇଥିଲେ ସାଧାରଣ ଶ୍ରେଣୀର ଉଜ୍ଜାସୂତ ହିସାବରେ ଜେଲ୍‌କୁ ଠେଲିହୋଇ ଯାଏ । ତେଣୁ ମନସ୍ତାତ୍ତ୍ୱିକ ଦୃଷ୍ଟିରେ ଏ ଦୁଇଦଳ ଲୋକଙ୍କ ଭିତରେ ଅପରାଧ ଦୃଷ୍ଟିକୋଣରୁ ବିଶେଷ ତଫାତ୍ ନାହିଁ । ସାମାଜିକ ଦୃଷ୍ଟିକୋଣରୁ ଧନୀ ଓ ଭଦ୍ର ଅପରାଧୀ ଗରିବ ଓ ଅଭଦ୍ର ଅପରାଧୀଙ୍କ ଅପେକ୍ଷା ବହୁମାତ୍ରାରେ ଭୟଙ୍କର ।

ପିଲାମାନେ ବାପ ମାଙ୍କ ବିରୁଦ୍ଧରେ ଯେପରି ବିଦ୍ରୋହୀ ହୋଇ ଉଠନ୍ତି, ସ୍କୁଲ ମାଷ୍ଟ୍ର, ପଡ଼ୋଶୀ କିମ୍ବା ଅନ୍ୟାନ୍ୟ ଅଭିଭାବକଙ୍କ ବିରୁଦ୍ଧରେ ମଧ୍ୟ ସେହିପରି ଭାବରେ ବିଦ୍ରୋହ ମନ ଭିତରେ ପୋଷଣ କରିପାରନ୍ତି । ଯେଉଁ ପିଲାଙ୍କର ନ୍ୟାୟ ଅନ୍ୟାୟ ବିଚାର କରିବା ଶକ୍ତି କିଛି କମ୍ ନୁହେଁ ଘରେ ବା ସ୍କୁଲରେ କୌଣସି ଗୋଟିଏ କାମ ପାଇଁ ଯଦି ବାପ ମା କିମ୍ବା ସ୍କୁଲ ଶିକ୍ଷକ ପିଲାମାନଙ୍କ ଉପରେ ପାତରଅନ୍ତର ବ୍ୟବହାର କରନ୍ତି, ତା'ହେଲେ ଅନ୍ୟାୟରେ ଦଣ୍ଡ ବା ଗାଳି ଖାଇଥିବା ପିଲାର ମନ ବିଦ୍ରୋହୀ ହୋଇଉଠେ । ଏ ପ୍ରକାର ବ୍ୟବହାର ସେ ଯଦି ବାରମ୍ବାର ଦେଖେ ଏବଂ ସେ ଯଦି ଅନୁଭବ କରେ ଯେ ତା ଉପରେ ସେମାନେ ଅଯଥା ବିରକ୍ତ ହେଉଛନ୍ତି, ତା'ହେଲେ ସେମାନଙ୍କ ପ୍ରତି ତା'ର ବିଦ୍ୱେଷ ଦେଖାଦିଏ । ସେମାନଙ୍କୁ ମୁହଁ ଉପରେ କିଛି ନ କହିଲେ ସୁଦ୍ଧା ତାର

ଅଚେତନ ମନ ଭିତରେ ଏ ପ୍ରକାର ରାଗ ଜମାଟ ବାନ୍ଧିଥାଏ ଏବଂ ସମୟ ଓ ସୁବିଧା ଅନୁସାରେ ତାହା ସମାଜର ଅନ୍ୟାନ୍ୟଙ୍କ ଉପରେ ପ୍ରୟୋଗ ହୋଇଥାଏ । ସ୍କୁଲରେ ଗରିବ ଶିକ୍ଷକ ଅନେକ ସମୟରେ ନାନା ପ୍ରକାର ଭୟ ଓ ପ୍ରଲୋଭନ ଯୋଗୁଁ ବଡ଼ଲୋକ ଓ ଗରିବ ଲୋକଙ୍କର ପିଲାଙ୍କ ପ୍ରତି ପାର୍ଥକ୍ୟ ବ୍ୟବହାର କରିଥାନ୍ତି । ଧନତାନ୍ତ୍ରିକ ସମାଜରେ ଏପ୍ରକାର ବ୍ୟବହାର ସ୍ୱାଭାବିକ । କିନ୍ତୁ ପିଲାଙ୍କ ମନରେ ଏହା ଖୁବ୍ ବେଶି ତିକ୍ତତା ସୃଷ୍ଟି କରେ । ଏହା ଯଦି ବେଶି ପରିମାଣରେ କିମ୍ବା ଗୋଟିଏ ପରିସ୍ଥିତିରେ ବାରମ୍ବାର ଦେଖାଦିଏ, ତାହେଲେ କେତେକ ପିଲା ଏପରି ବିଦ୍ରୋହୀ ହୋଇ ଉଠନ୍ତି ଯେ ସ୍କୁଲରେ ସାଙ୍ଗେ ସେମାନେ କିଛି ନା କିଛି ଅଶୋଭନୀୟ ପରିସ୍ଥିତି ସୃଷ୍ଟି କରି ବସନ୍ତି । ଭବିଷ୍ୟତ ଅପରାଧୀ ସୃଷ୍ଟି କରିବାରେ ଏ ପ୍ରକାର ବ୍ୟବହାର ବହୁତ ସାହାଯ୍ୟ କରେ । ଅଧିକାଂଶ ଅଳ୍ପ-ବୟସ୍କ ଅପରାଧୀ ଏପରି ପରିସ୍ଥିତିରେ ସ୍କୁଲ ଛାଡ଼ି ଚାଲି ଆସିଥିବାର ଦେଖାଯାଏ ।

ଅନେକ ସମୟରେ ବାପ ମା'ମାନେ ବହୁ ଆଶା ପୋଷି ପିଲାକୁ ସ୍କୁଲକୁ ଛାଡ଼ନ୍ତି । ପିଲା ନାନା କାରଣରୁ ସ୍କୁଲରେ ଭଲ ପଢ଼େନାହିଁ । ହୁଏତ ତାର ବୁଦ୍ଧି କମ୍ ଥିବାରୁ ସେ ଶ୍ରେଣୀର ଅନ୍ୟ ପିଲାଙ୍କ ସହିତ ତାଳଦେଇ ଚାଲିପାରେନା । ହୁଏତ ତା'ର ଆଖି କିମ୍ବା କାନ ଖରାପ ଥିବାରୁ ସେ ଭଲକରି ଦେଖି କିମ୍ବା ଶୁଣି ପାରେନା—କିମ୍ବା ଘରର ଆବହାଓ୍ୱା ପଠନୋପଯୋଗୀ ହୋଇ-ନଥିବାରୁ ସେ ସ୍କୁଲ ପାଠ ଘରେ ଭଲକରି ଠିକ୍ କରି ପାରେନାହିଁ । କିମ୍ବା ଶିକ୍ଷକଙ୍କର ଚରମ ଅକ୍ଷମତା ଯୋଗୁଁ ତା'ର ପଢ଼ା ପ୍ରତି ଆଗ୍ରହ ହୁଏନାହିଁ । ଯେ କୌଣସି କାରଣରୁ ହେଉନା କାହିଁକି, ପିଲା ଯଦି ଭଲ ନ ପଢ଼ିଲା, ତା'ହେଲେ ଅନେକ ସମୟରେ ତା'

ଉପରେ ମାଡ଼ ବସେ,—ଶିକ୍ଷକ ସବୁବେଳେ ତା ଉପରେ ବିରକ୍ତ ହୁଅନ୍ତି—ଭଲପିଲାମାନେ ତାକୁ ଘୃଣା କରନ୍ତି । ସେ ଯଦି ପ୍ରକୃତରେ ବୁଦ୍ଧିହୀନ ହୋଇଥାଏ ତାକୁ ନେଇ ସମସ୍ତେ ଥଟ୍ଟା ପରିହାସ କରନ୍ତି । ତାର କୌଣସି ଗୋଟିଏ ହାସ୍ୟାସ୍ପଦ ବୋକାମି ନେଇ ତାକୁ ଅନବରତ ଚିଡ଼ାନ୍ତି । ଏପରି ଅବସ୍ଥାରେ କେଉଁ ପିଲାକୁ ଭଲ ଲାଗିବ ସ୍କୁଲରେ ଘଣ୍ଟା ଘଣ୍ଟା ଧରି ବସି ଅପମାନିତ ହେବାକୁ ? ସେ ଭୟରେ କମ୍ପା ଲାଗରେ ସ୍କୁଲ ଚଉହଦିରେ ସହଜେ କିଛି କହି ପାରେନା ଅଥଚ ସ୍କୁଲକୁ ଯିବାରେ ତା'ର ଭୟାନକ ଅନାଗ୍ରହ । ଘରେ ବାଧ୍ୟ କରି ବାପ ମା' ଅନେକ ସମୟରେ ତାକୁ ଠେଲି ପେଲି ସ୍କୁଲକୁ ପଠାନ୍ତି ଅଥଚ ସ୍କୁଲ ପ୍ରତି ତାର ଭୟଙ୍କର ଘୃଣା । ଫଳରେ ସେ ଘରୁ ବହିପତ୍ର ଧରି ବାହାରେ ସତ, କିନ୍ତୁ ସ୍କୁଲକୁ ନ ଯାଇ ବାହାରେ ବୁଲେ । ଏପରି ପରିସ୍ଥିତିରେ ତା'ପରି ସ୍କୁଲରୁ ବାହାରି ଆସିଥିବା ଆହୁରି ଅନେକ ପିଲା ଇତସ୍ତତଃ ସଡ଼କରେ ବୁଲୁଥାଆନ୍ତି । ସେମାନେ ତାକୁ ସାଦରରେ ଅଭ୍ୟର୍ଥନା କରି ନିଅନ୍ତି । ସେ ହଠାତ୍ ସ୍କୁଲର ବିରକ୍ତିକର ପରିସ୍ଥିତି ଗୃହ ଗୋଟିଏ ପ୍ରୀତିକର ପରିସ୍ଥିତିରେ ସାଙ୍ଗସାଥି ମେଳରେ ଆସି ରହେ ।

ସହରମାନଙ୍କରେ ଏ ପ୍ରକାର ପିଲାଙ୍କ ସଂଖ୍ୟା ଅନେକ । ସେ କୌଣସି ମୁହୂର୍ତ୍ତରେ କଟକର ଯେ କୌଣସି ଗଳିକନ୍ଦିରେ ପଶିଲେ ଏ ପ୍ରକାର ପିଲା କେତେ ଜଣଙ୍କୁ ନିଶ୍ଚୟ ବୁଲିବାର ଦେଖାଯିବ । ବିନାକାମରେ ଦଳ ଦଳ ପିଲା ବେକାର ହୋଇ ଗଳି କନ୍ଦିରେ କେତେ ଦିନ ବୁଲିବେ ? ପିଲାଙ୍କର ସବୁ ବିଷୟରେ ଅଦମ୍ୟ କୌତୂହଳ ଓ ଉତ୍ସାହ । କୌଣସି ନା କୌଣସି କାମ କରିବାରେ ସେମାନଙ୍କର ପ୍ରବଳ ଆଗ୍ରହ ସେମାନଙ୍କୁ ନାନା ପ୍ରକାର ଅସାମାଜିକ କାର୍ଯ୍ୟରେ ଲିପ୍ତ କରାଏ । କିଛିନା କିଛି କାମ କରିବା ତ ସେମାନଙ୍କ ପକ୍ଷରେ

ଅତ୍ୟନ୍ତ ସ୍ୱାଭାବିକ, କିନ୍ତୁ କୌଣସି ଭଲ କାମ ଏମାନଙ୍କ ପାଇଁ ନ ଥିଲେ ମନ୍ଦକାମ କରିବାପାଇଁ ସେମାନଙ୍କର ଉତ୍ସାହ ଦେଖାଦିଏ। ତାହା ଦେକେଣ୍ଡରେ ଢାଙ୍କମାରିବା, କାହା କାନ୍ଥରେ ଅଙ୍ଗାରରେ ଅଶ୍ଳୀଳ କଥା ଲେଖିବା, କେଉଁ ଲାଇଟ୍ ପୋଷ୍ଟର ଲାଇଟକୁ ଢେଲା ମାରି ଭାଙ୍ଗି ଦେବା, ରାସ୍ତାରେ ଯାଉଥିବା ଷଣ୍ଢକୁ ବଗିଡ଼େଇବା କିମ୍ବା ଦୁଇ ଦଳ ପିଲାଙ୍କ ଭିତରେ ଝଗଡ଼ା ଲଗାଇ ଝଗଡ଼ା ଛଡ଼ାଇବା କେବଳ ଏମାନଙ୍କର ଦୈନନ୍ଦିନ କାମ। ଏହି ଅକର୍ମା ଅର୍ବାଚୀନ ଅଥଚ କୌତୂହଳୋଦ୍ଦୀପ୍ତ କିଶୋର ଦଳରୁ ହିଁ ଭବିଷ୍ୟତର ଅପରାଧୀମାନେ ଆସିଥାନ୍ତି। ଜେଲ୍ ଭିତରେ ଥିବା ଅଳ୍ପବୟସ୍କ ଅପରାଧୀମାନଙ୍କ ବିଷୟରେ ଆମର ଗବେଷଣାରୁ ଜଣାଯାଏ ଯେ ଏମାନଙ୍କ ଭିତରୁ ଅଧିକାଂଶ ହେଉଛନ୍ତି ସହରବାସୀ କିମ୍ବା ସହର ଭିତରେ ସେମାନେ ଅବସ୍ଥାନ କରିଛନ୍ତି। ଏମାନେ ସହରର ଏ ପ୍ରକାର ଦୂଷିତ ପରିସ୍ଥିତିରେ ସେମାନଙ୍କର ଅପରାଧ ଜୀବନ ଆରମ୍ଭ କରିଥାଆନ୍ତି।

ପ୍ରାୟ ଅଧିକାଂଶ ବୟସ୍କ ଅପରାଧୀ ତାଙ୍କର ଅପରାଧୀ ଜୀବନ ବାଲ୍ୟ ବା କୈଶୋରାବସ୍ଥାରୁ ଆରମ୍ଭ କରିଥାନ୍ତି। ସେ ପ୍ରଥମେ ବାପ ମା'ଙ୍କ ବିରୁଦ୍ଧରେ ବିଦ୍ରୋହ କରି ଦେଇ କିମ୍ବା ନିଜର ଅତ୍ୟାବଶ୍ୟକୀୟ ଅଭାବ-ମେଣ୍ଟନ ପାଇଁ ହେଉ, ଘରୁ ଚୋରି ଆରମ୍ଭ କରେ। ଘରେ ଧରାପଡ଼ିଲେ ମାଡ଼ ଗାଳି ଖାଏ। କୌଣସି ବଦ୍ଧମୂଳ ମନସ୍ତାତ୍ତ୍ୱିକ କାରଣରୁ ଚୋରି ଆରମ୍ଭ କରି ନ ଥିଲେ, କାଳକ୍ରମେ ସେ ଚୋରି ଛାଡ଼ିଦିଏ। କିନ୍ତୁ ଉପରେ ବର୍ଣ୍ଣିତ ହୋଇଥିବା କୌଣସି ତୀବ୍ର ବିଦ୍ୱେଷ ବା ମାନସିକ ବିଦ୍ରୋହ ଯୋଗୁଁ ଚୋରି ଆରମ୍ଭ କରିଥିଲେ ସେ ଘର ଭିତରୁ ଚୋରି କରିବା ଛାଡ଼ିଦେଇ ବାହାରୁ ଚୋରି ଆରମ୍ଭ କରେ ଏବଂ କ୍ରମେ ତାହା ବଦ୍ଧମୂଳ ଅଭ୍ୟାସରେ

ପରିଣତ ହୋଇଥାଏ । ବଡ଼ ଲୋକ ପିଲା ହୋଇଥିଲେ କଳା-ବେପାର କରେ, ଗରିବ ପିଲା ହୋଇଥିଲେ କାହା ଘରୁ କଂସା ବାସନ, କାହା ଘରୁ ଲୁଗାପଟା ଦି'ଖଣ୍ଡ ଚୋରି କରି ଜେଲ୍ ଯାଏ ।

ଯେଉଁ ବାପ ମା'ମାନେ ପିଲାଙ୍କୁ ଚୋରି ଶିଖାନ୍ତି ସେମାନଙ୍କ କଥା ତ ଭିନ୍ନ -- ସେମାନଙ୍କର ପିଲାମାନେ ଚୋରିକୁ ଗୋଟିଏ ବୃତ୍ତି ସ୍ୱଭାବରେ ଗ୍ରହଣ କରନ୍ତି । ଏ ପ୍ରକାର ଚୋରର ମୂଳରେ କୌଣସି ମନସ୍ତାତ୍ତ୍ୱିକ ଅସ୍ଥିରତା କିମ୍ବା ଅଚେତନ ମନର ପ୍ରବୃତ୍ତି କାମ କରୁ ନ ଥାଏ । ବାପ ମା' ଯାହା କରନ୍ତି ବା ଯାହା ଶିଖାନ୍ତି ତାକୁ ବିନା ଦ୍ୱିଧାରେ ସେମାନେ ଗ୍ରହଣ କରିଯା'ନ୍ତି ଏବଂ ଏହା ପରେ ଅଭ୍ୟାସରେ ପରିଣତ ହୋଇଗଲେ ଆଉ ବନ୍ଦ କରି ହୁଏ ନାହିଁ । ତା ଛଡ଼ା ପରେ ଅପରାଧୀ ହିସାବରେ ଦଣ୍ଡିତ ହୋଇସାରିଲାପରେ ଏହି ବୃତ୍ତିକୁ ବାଛିନେବା ଛଡ଼ା ତାର ଅନ୍ୟ ଉପାୟ ନ ଥାଏ ।

ବାପମା'ଙ୍କ ଯୋଗୁଁ ଅନେକ ଅପରାଧୀଭୁକ୍ତ ହୁଅନ୍ତି ଏବଂ ବାପମା'ଙ୍କ ବିନା ମଧ୍ୟ ଅନେକେ ଅପରାଧୀ ହୋଇ ପଡ଼ନ୍ତି — ଇଂଲଣ୍ଡ ଓ ଭାରତର କେତେକ ସ୍ଥାନରେ ଗବେଷଣା କରି ଦେଖା-ଯାଇଛି ଯେ ଶତକଡ଼ା ପ୍ରାୟ ଷାଠିଏ ଜଣ ଅଳ୍ପବୟସ୍କ ଅପରାଧୀ ବାପ ମା' ଛେଉଣ୍ଡ କିମ୍ବା ଅନ୍ତତଃ ବାପା କିମ୍ବା ମା' ଭିତରୁ ଜଣକୁ ପିଲାଦିନୁ ହରାଇଥାନ୍ତି । ଏଥିରୁ ଜଣାଯାଏ ଅପରାଧୀମାନେ ମୂଳରୁ କଉର ଗୋଟିଏ ପ୍ରକାର ପାରିବାରିକ ଅଭାବ ଓ ମାନସିକ ଉଦ୍‌ବେଗ ନେଇ ଜୀବନ ଆରମ୍ଭ କରିଥାନ୍ତି ।

ଆଉ ଦଳେ ପିଲା ଅଛନ୍ତି, ଯେଉଁମାନେ କେବଳ ନିଜ ଘରୁ ଚୋରି କରନ୍ତି—ମା'ର ହାତ ବାକ୍ସରୁ, ବାପର ପକେଟରୁ, ଭାଇ ଭଉଣୀମାନଙ୍କ ବାକ୍ସରୁ ପଇସା ପତ୍ର, ଭଣ୍ଡାର ଘରୁ ଖାଇବା ଜିନିଷ ଚୋରି କରନ୍ତି । ବାହାରେ ସେମାନେ ଭାରି ଭଲ । ଅନ୍ୟ କାହା

ପାଖରୁ ଚୋରି କରନ୍ତି ନାହିଁ । ଏ ପ୍ରକାର ଚୋରି ମଧ୍ୟ ବାପ ମା'ଙ୍କ ବ୍ୟବହାର ଯୋଗୁଁ ଘଟିଥାଏ । ଯଦି ପିଲା କୌଣସି କାରଣ ଯୋଗୁଁ ଭାବେ ଯେ, ବାପ ମା' ତାକୁ ଅନ୍ୟ ଭାଇ ଭଉଣୀଙ୍କ ପରି ଯଥେଷ୍ଟ ସ୍ନେହ ଦେଖାଉ ନାହାନ୍ତି, ତାହେଲେ ତାର ବାପ ମା'ଙ୍କ ପ୍ରତି ରାଗ ହୁଏ ଏବଂ ଭାଇ ଭଉଣୀଙ୍କ ପ୍ରତି ଈର୍ଷା ହୁଏ । ଏପରି ସ୍ଥଳେ ପିଲାମାନେ ବହୁତ ବେଶି ସ୍ନେହ ଭୁକ୍ଷା ହୋଇ ଉଠନ୍ତି । କିନ୍ତୁ ସ୍ନେହକୁ ତ ଆଉ ଚୋରି କରି ହୁଏନାହିଁ—ତେଣୁ ସ୍ନେହ ପରିବର୍ତ୍ତନରେ ମାଆ ବାପାଙ୍କର ଆଦରର ଜିନିଷ ସବୁ ଚୋରି କରି ଆନନ୍ଦ ପାଆନ୍ତି—ପ୍ରକାରାନ୍ତରେ ଏହା ସ୍ନେହ ଚୋରି ପରି ହୁଏ । ଏଥିରେ ସ୍ନେହକାଙ୍ଗାଳ ପିଲାଙ୍କର ଆତ୍ମସନ୍ତୋଷ ହୁଏ । ଏ ପ୍ରକାର ଚୋରି ଅଭ୍ୟାସ କ୍ରମେ କ୍ରମେ କମିଯାଇ ପାରେ କିମ୍ବା ଅନ୍ୟାନ୍ୟ ପରିସ୍ଥିତିଗତ ଜଟିଳତା ଯୋଗୁଁ ବଢ଼ି ମଧ୍ୟ ଯାଇପାରେ । କିନ୍ତୁ ଉପଯୁକ୍ତ ମନସ୍ତାତ୍ତ୍ୱିକ ଚିକିତ୍ସା ଦ୍ୱାରା ଏହା କମିଯିବାର ସମ୍ଭାବନା ।

ବାପ ମା'ଙ୍କର ଅଜ୍ଞାତସାରରେ ପିଲାମାନଙ୍କ ମନରେ ଗଢ଼ି ଉଠିଥିବା ଅପରାଧ ପ୍ରବୃତ୍ତି କେବଳ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ଚିକିତ୍ସାଦ୍ୱାରାହିଁ ଦୂର କରିହେବ । ଏ କ୍ଷେତ୍ରରେ ବାପ ମା'ଙ୍କର ସାହାଯ୍ୟ ବହୁତ ଦରକାର । ପ୍ରକୃତରେ ମନସ୍ତାତ୍ତ୍ୱିକ ଚିକିତ୍ସା ପ୍ରଥମେ ବାପ ମା'ଙ୍କର ହିଁ ହେବା ଉଚିତ । କୌଣସି ସ୍ନେହଶୀଳ ଓ ଭଦ୍ର ବାପ ମା ନିଜର ପିଲାକୁ ଜାଣିଶୁଣି ଅପରାଧୀ କରିବାକୁ ଚାହାନ୍ତି ନାହିଁ, ତେଣୁ ସେମାନଙ୍କଠାରୁ ସାହାଯ୍ୟ ଓ ସହଯୋଗ ମିଳିବା ସମ୍ଭବ । କିନ୍ତୁ ଯେଉଁ ଅଭିଭାବକମାନଙ୍କ ପ୍ରରୋଚନାରେ ପିଲା ଚୋରିବିଦ୍ୟା ଶିଖେ, ସେମାନଙ୍କୁ ପୁଣି ସମାଜ ଭିତରକୁ ଆଣିବା ବଡ଼ କଷ୍ଟସାଧ୍ୟ ! ଏଥିପାଇଁ ଅନ୍ୟ ପ୍ରକାର ସାମାଜିକ ବ୍ୟବସ୍ଥା ଦରକାର ।

---

## ଅପରାଧୀର ମନସ୍ତାତ୍ତ୍ୱିକ ଅଭାବ

ଯେଉଁ ଅପରାଧୀଙ୍କ ଲାଗି ପିତାମାତା ବା ଅଭିଭାବକମାନେ ଦାୟୀ ସେ ପ୍ରକାର ମନସ୍ତାତ୍ତ୍ୱିକ ଅପରାଧୀଙ୍କୁ ଛାଡ଼ିଦେଲେ, ଆଉ ଦଳେ ଅଳ୍ପ ବୟସ୍କ ଅପରାଧୀ ଅଛନ୍ତି ଯେଉଁମାନଙ୍କ ଲାଗି ସମାଜର ଅନ୍ୟାନ୍ୟ ପରିବେଶ ଦାୟୀ । ଏଥିଭିତରୁ ଦାରିଦ୍ର୍ୟ ଗୋଟିଏ ପ୍ରଧାନ କାରଣ । ଆମ ଦେଶରେ ଯେତେ ଅଳ୍ପବୟସ୍କ ଅପରାଧୀ ଅଛନ୍ତି, ସେମାନଙ୍କ ଭିତରୁ ବୋଧହୁଏ ଶତକଡ଼ା ନବେ ଆର୍ଥିକ ଅନାଟନ ଯୋଗୁଁ ଅପରାଧ କରିଥାଆନ୍ତି । ଏଥିରେ ବାପମାଙ୍କ ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରରୋଚନା ଥାଇପାରେ । ଯେଉଁ ପିଲା ବେଳବେଳ ଧରି ଖାଇବାକୁ ପାଏନା—ରାସ୍ତାରେ ଭିକ ମାଗି ବୁଲେ, ସେ ଯଦି ହାତ ପାଖରେ ପଇସା କମ୍ବା ଖାଇବା ଜିନିଷ ସୁବିଧାରେ ପାଏ, ତା'ହେଲେ ତା ପକ୍ଷରେ ଚୋରି ନକରିବାଟା ଅସ୍ୱାଭାବିକ ହୋଇପଡ଼ିବ ।

ପରେ ଚୋରିକରି ଖାଇବା ପିଇବା ସୁବିଧାରେ ଚଳେଇ ପାରିଲେ, କ୍ରମେ ଚୋରିକରିବା ତା'ର ଅଭ୍ୟାସରେ ପରିଣତ ହୋଇଯାଏ । ତା'ଛଡ଼ା ପରେ ଅପରାଧ କରି ଜେଲ ଭିତରେ ରହିଲେ ସେ ଏପରି ଭାବରେ ସମାଜଛଡ଼ା ହୋଇପଡ଼େ ଯେ, ଚୋରିକରିବା ଛଡ଼ା ଆଉ କୌଣସି ବୃତ୍ତି ତା ପକ୍ଷରେ ସମ୍ଭବ ହୁଏ ନାହିଁ । ପରେ ଜେଲ ଯାଇଥିବା ଅପରାଧୀକୁ ସମାଜ କୌଣସି ସମ୍ମାନ ଦେଖାଏ ନାହିଁ କି ଭବିଷ୍ୟତରେ ପୋଲିସ୍ ତାକୁ ନିରପରାଧ ବୋଲି ଗ୍ରହଣ କରିପାରେ ନାହିଁ । ସେ ବାସ୍

କରୁଥିବା ଅଞ୍ଚଳରେ କୌଣସି ଅପରାଧ ଘଟିଲେ ବି ସେ ଅପରାଧ ସହିତ ସମ୍ପୃକ୍ତ ଅଛି କି ନ ଥାଉ ସନ୍ଦେହରେ ତାକୁଇ ଧରନ୍ତି । ସେ ଚେଷ୍ଟା କରିଥିଲେ ସୁଦ୍ଧା ଅନ୍ୟ ଧନ୍ଦାରେ ଧ୍ୟାନ ଦେବାକୁ ତାକୁ ବାଧା କରାଯାଏ । ଫଳରେ ଅନ୍ୟ ଅପରାଧୀଙ୍କ ସହିତ ବନ୍ଧୁତା ବାନ୍ଧିବା ଛଡ଼ା ତା'ର ଅନ୍ୟ ଉପାୟ ନ ଥାଏ । ସମାଜର ଅନ୍ଧାର ରାଜ୍ୟରେ ବିଚରଣ କରିବା ଛଡ଼ା ସଭ୍ୟ-ସମାଜରେ ତା'ର ସ୍ଥାନ ନ ଥାଏ । ଏମାନଙ୍କର ସମସ୍ୟା ଆମ ଦେଶରେ ଗୋଟିଏ ପ୍ରଧାନ ସମସ୍ୟା ।

ଏମାନଙ୍କ ଥଇଥାନ ଲାଗି ବିଭିନ୍ନ ବେସରକାରୀ ସାମାଜିକ ଅନୁଷ୍ଠାନ ଓ ସରକାରୀ ଜେଲ ବିଭାଗ ତରଫରୁ ବହୁତ କାମ କରିବାର ଅଛି । ଏ ପ୍ରକାର ଅପରାଧୀଙ୍କ ଭିତରୁ ଅଧିକାଂଶଙ୍କର କୌଣସି ସ୍ଥାୟୀ ଘର ନ ଥାଏ କିମ୍ବା ଚଳିବା ଲାଗି କୌଣସି ପରିବାରିକ ସମ୍ପର୍କ ନ ଥାଏ । ଅଳ୍ପ ବୟସରୁ ଚୋରି ଆରମ୍ଭ କରିବା ଯୋଗୁଁ ନିଜର କ୍ଷମତାନୁଯାୟୀ ବୈଷୟିକ ଶିକ୍ଷା ମଧ୍ୟ ଏମାନଙ୍କର ନ ଥାଏ । ଗୃହହୀନ, ସମ୍ପର୍କହୀନ, ଅଭ୍ୟାଗତ ଅପରାଧୀ ଜେଲରୁ ଖଲାସ ହେଲା ପରେ ତା ପକ୍ଷରେ ଚୋରିକରି ପୁଣି ଜେଲକୁ ଫେରିଯିବା ଛଡ଼ା ଆଉ କ'ଣ ଉପାୟ ଥାଏ ? ତେଣୁ ଏମାନଙ୍କୁ ଜେଲ ଭିତରେ ଓ ବାହାରେ କୌଣସି ଗୋଟିଏ ବୃତ୍ତି ଶିଖାଇବା ଦରକାର ଏବଂ ଜେଲରୁ ଖଲାସ ହେବା ମାତ୍ରକେ ଏହି ଶିକ୍ଷା ସାହାଯ୍ୟରେ ସେମାନେ ଯେପରି ଜୀବିକା ଅର୍ଜନ କରି-ପାରିବେ, ସେଥିଲାଗି ସରକାର ତରଫରୁ ଆୟୋଜନ ହେବା ଦରକାର । ଅପରାଧ ନକରି ଭଦ୍ରଭାବରେ ଚଳିପାରିବାର ଉପାୟ ଥିଲେ ଅନେକ ଅପରାଧୀ ପୁଣି ଥରେ ଅପରାଧ କରିବେ ନାହିଁ । ଏମାନଙ୍କ ଛଡ଼ା ଆଉ ଯେତେକ ଦାଗୀ ଭିତରିଯିବେ, ସେମାନଙ୍କୁ

ସଜାଡ଼ିବା ବହୁତ କଷ୍ଟସାଧ୍ୟ । ଏମାନଙ୍କ ମଧ୍ୟରୁ ଅନେକ ହୁଏତ କୌଣସି ଗୋଟିଏ ମାନସିକ ବ୍ୟାଧିଗ୍ରସ୍ତ ଶ୍ରେଣୀ ହୋଇଥାଇ ପାରନ୍ତି । ତେଣୁ ମାନସିକ ରୋଗର ଉପଶମ ନ ହେଲେ ଯାଏ ସେମାନଙ୍କର ଅପରାଧ ପ୍ରବୃତ୍ତି ଦୂର ହେବ ନାହିଁ । ଯେତେକ ମାନସିକ ରୋଗ ଅଛି, ଯାହା ନ ପ୍ରଶମିତ ହୁଏ ନାହିଁ ଏମାନଙ୍କ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖି ଜେଲ ଭିତରେ ଏବଂ ବାହାରେ ଏମାନଙ୍କୁ ଜଗିବା ଛଡ଼ା ଅନ୍ୟ ଉପାୟ ନାହିଁ । କିନ୍ତୁ ଆମ ଜେଲ ଭିତରେ ଏପ୍ରକାର ଅପରାଧୀଙ୍କ ସଂଖ୍ୟା ବହୁତ କମ୍ ।

ଆଉ ଦଳେ ଅପରାଧୀ ଅଛନ୍ତି, ଯେଉଁମାନଙ୍କର ବୌଦ୍ଧିକ ବିକାଶ ଏତେ କମ୍ ଯେ, କୌଣସି ଲୋକର ପ୍ରରୋଚନାରେ ପଡ଼ି ଏମାନେ ଚୋରି କରନ୍ତି । ନିଜେ ଭାବ ଚିନ୍ତି ଗୋଟିଏ ଯୋଜନା ଅନୁସାରେ ଚୋରି କରିବାର କ୍ଷମତା ବା ବୁଦ୍ଧି ଏମାନଙ୍କର ନାହିଁ । ତେଣୁ ଅତି ସହଜରେ ଏମାନେ ବୁଦ୍ଧିଆ ଅପରାଧୀଙ୍କର କୁଟିଳ ଚକ୍ରାନ୍ତ ଭିତରେ ସନ୍ଧବଦ୍ଧ ଆସି ପଡ଼ିଯାଆନ୍ତି । ସହରମାନଙ୍କରେ ଏପ୍ରକାର ଲୋକଙ୍କୁ ଅପରାଧ କରିବା ଲାଗି ପ୍ରଯୋଗ କରିବା ବ୍ୟକ୍ତିଙ୍କର ଅଭାବ ନାହିଁ । ଅଳ୍ପ ବୟସ୍କ ଅପରାଧୀଙ୍କ ଅତୀତ ଜୀବନ ଇତିହାସରୁ ଦେଖାଯାଇଛି ଯେ, ଅଧିକାଂଶ ଅଳ୍ପବୟସ୍କ ଅପରାଧୀ ଅନ୍ୟମାନଙ୍କ ପ୍ରରୋଚନାରେ ହିଁ ଚୋରି ଆରମ୍ଭ କରିଥାଆନ୍ତି । ଖାଇବାକୁ ନ ପାଇ ନିରାଶ୍ରୟ ପିଲାମାନେ ରାସ୍ତାରେ ବୁଲୁଥିଲା ବେଳେ ଏମାନେ ସ୍ନେହ ଓ ଆଦର ଦେଖେଇ ସେମାନଙ୍କୁ ଡାକନ୍ତି—ଖାଇବାକୁ ପିନ୍ଧିବାକୁ ଦେଇ ପାଖରେ ରଖନ୍ତି ଏବଂ ତା ବଦଳରେ ସେମାନେ ଅନ୍ୟମାନଙ୍କଠାରୁ ଚୋରିକରି ଆଣି ଏମାନଙ୍କୁ ଦିଅନ୍ତି । ନିର୍ବୁଦ୍ଧିଆ ବା ଅଳ୍ପବୁଦ୍ଧିଆ ପିଲାମାନେ ଏପ୍ରକାର ରକ୍ଷକଙ୍କ ମାଖନରେ ବହୁତ ଦିନ ଧରି ରହିଯାଆନ୍ତି । କିନ୍ତୁ ଯୁବକ

ପିଲମାନେ କିଛି ଦିନ ପରେ ନିଜନିଜର ଶ୍ରେଣିର ବ୍ୟବସାୟ ସ୍ୱାଧୀନ ଭାବରେ ଚଳାଇ ପାରନ୍ତି ।

ଅଳ୍ପ ବୁଦ୍ଧିଆ ପିଲମାନେ ଯେପରି ପାଠ ପଢ଼ିବାକୁ ଅକ୍ଷମ ଥିବାରୁ ବିରକ୍ତ ହୋଇ ସ୍କୁଲ ଛାଡ଼ି ଚାଲିଯାଆନ୍ତି, ଅତି ବୁଦ୍ଧିଆ ପିଲମାନେ ମଧ୍ୟ ସ୍କୁଲର ନୀରସ ପାଠ୍ୟ ଓ ସହାନୁଭୂତିହୀନ ଅଯୋଗ୍ୟ ଶିକ୍ଷକଙ୍କ ପଢ଼ାରେ ବିରକ୍ତ ହୋଇ ସ୍କୁଲ ଛାଡ଼ି ରାସ୍ତାରେ ବୁଲନ୍ତି । ଏପରି ଅପରାଧୀଙ୍କ ପାଇଁ ଭିନ୍ନ ପ୍ରକାର ଶିକ୍ଷାଦାନର ବ୍ୟବସ୍ଥା ହେବା ଦରକାର । ସ୍କୁଲରେ ପିଲମାନଙ୍କର ବୁଦ୍ଧି ଓ ଦକ୍ଷତାର ପରୀକ୍ଷା କରାହୋଇ ସେମାନଙ୍କ ଲାଗି ଭିନ୍ନ ଭିନ୍ନ ପ୍ରକାର ଶିକ୍ଷା ପ୍ରଣାଳୀର ବନ୍ଦୋବସ୍ତ କଲେ ସେମାନଙ୍କର ମନ ପାଠରେ ଲାଗିଯିବ । ଏ ପ୍ରକାର ଶିକ୍ଷା ପ୍ରଣାଳୀର ପ୍ରବର୍ତ୍ତନ ଲାଗି ଶିକ୍ଷାକ୍ଷେତ୍ରରେ ବିପ୍ଳବାତ୍ମକ ପରିବର୍ତ୍ତନ ଦରକାର—ସେଥିପାଇଁ ଆମର ରକ୍ଷଣଶୀଳ ଶିକ୍ଷାବିତ୍‌ମାନେ ପ୍ରସ୍ତୁତ ଅଛନ୍ତି ?

ଅନ୍ୟାନ୍ୟ ଦେଶରେ ଅଳ୍ପ ବୁଦ୍ଧିସମ୍ପନ୍ନ ଓ ଶିକ୍ଷାରେ ଅନଗ୍ରସର ପିଲଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟମାନ ରହିଛି । ଏ ପ୍ରକାର ବିଦ୍ୟାଳୟ ସାଧାରଣ ବିଦ୍ୟାଳୟଠାରୁ ଅନେକାଂଶରେ ଭିନ୍ନ । ଏଠାରେ ସ୍ୱତନ୍ତ୍ରଭାବେ ତାଲିମ ପାଇଥିବା ଶିକ୍ଷକ ରହିଛନ୍ତି ଓ ନାନା ପ୍ରକାର ଆମୋଦକର ପ୍ରଣାଳୀରେ ଶିକ୍ଷା ଦିଆଯାଏ । ଖେଳନା ଓ ଅନ୍ୟାନ୍ୟ ଆଗ୍ରହ ଉଦ୍ଦୀପକ ଶିକ୍ଷା ବସ୍ତୁ ସାହାଯ୍ୟରେ ଏପରି ପିଲକୁ ଖେଳାଇ ଖେଳାଇ ସେମାନଙ୍କୁ ନାନା ବିଷୟରେ ବିଶେଷ ତାଲିମ ଦିଆଯାଏ । ଫଳରେ ସେମାନେ ଭବିଷ୍ୟତରେ ଅକର୍ମା ନ ହୋଇ ଶ୍ରେଣିର ଉତ୍କାପ୍ରିତ ନ ହୋଇ, ନାନା ପ୍ରକାର କାର୍ଯ୍ୟରେ ନିଜକୁ ପ୍ରତିଯୋଜନ କରିପାରନ୍ତି । ଏମାନଙ୍କ ପାଇଁ ଧୃକିର ମଧ୍ୟ ବନ୍ଦୋବସ୍ତ କରାଯାଏ ।

———

# ଖେଳ ଓ ବ୍ୟାୟାମର ଆବଶ୍ୟକତା

ଆମ ଦେଶର ପୁରୁଣାକାଳିଆ ଲୋକଙ୍କର ଖେଳ ଓ ଅନ୍ୟାନ୍ୟ ଦୈନନ୍ଦିନ ଆମୋଦଙ୍କର କାର୍ଯ୍ୟାବଳୀ ପ୍ରତି ସେତେ ଭଲ ଧାରଣା ନାହିଁ । ସେମାନଙ୍କ ମତରେ ପିଲାଏ ଖେଳିଲେ ଚଗଲା ହୋଇଯାଆନ୍ତି—ସିନେମା ଥିଏଟର ଦେଖିଲେ ଚରିତ୍ରହୀନ ହୋଇଯିବେ—ନାଚ ଗୀତରେ ଯୋଗଦେଲେ ବଳାଘ ହୋଇଯିବେ ଇତ୍ୟାଦି । ବର୍ତ୍ତମାନ ସୁଦ୍ଧା ଆମ ଶିକ୍ଷାକ୍ଷେତ୍ରରେ ଏପରି ଚିନ୍ତାର ପ୍ରଭାବ ଖୁବ୍ ବେଶି । କିନ୍ତୁ ବହୁବର୍ଷର ଅଭିଜ୍ଞତା ଓ ଗବେଷଣା ଫଳରେ ଦେଖାଯାଇଛି ଯେ ପିଲାଙ୍କର ଶିକ୍ଷା ପାଇଁ ଖେଳ ଓ ଅନ୍ୟାନ୍ୟ ଆମୋଦକର କାର୍ଯ୍ୟାବଳୀ ବହୁତ ଦରକାର । ପିଲାମାନେ ବଡ଼ କଳ୍ପନାପ୍ରିୟ । କୌତୂହଳ ସେମାନଙ୍କର ବେଶି । ନାନାପ୍ରକାର ଦୈହିକ କାମ କରିବାରେ ଏମାନଙ୍କର ଅଫୁରନ୍ତ ଉତ୍ସାହ ଓ ଉନ୍ମାଦନା । ଜନ୍ମଗତ ଓ ଶରୀରଗତ ଶକ୍ତିର ପ୍ରକୃତ ନିୟୋଜନ ଓ ବିକାଶ ଲାଗି ଦୈହିକ ଖେଳ ଓ ବ୍ୟାୟାମର ଆବଶ୍ୟକତା ଖୁବ୍ ବେଶି । ସବୁ ଖେଳ ସାହାଯ୍ୟରେ ତାହା ବ୍ୟୟିତ ହୋଇପାରେ ନାହିଁ; ତା'ହେଲେ ଅନ୍ୟାନ୍ୟ ଉପାୟରେ ଏହା ବହିର୍ଗତ ହୁଏ । ଲୁଚକାଳି ଖେଳ ଯେ ପଡ଼ିଆରେ ନ ଖେଳେ, ସେ ଗଳିକନ୍ଦି ରାସ୍ତାରେ ପୋଲିସ ସହିତ ଲୁଚକାଳି ଖେଳେ । ବୋହୁଚୋର ଖେଳ ପରିବର୍ତ୍ତେ ସେ ଅନ୍ୟର ବୋହୂ ଝିଅଙ୍କୁ ସତ୍ତ ଚୋର କରେ । ତା'ଛଡ଼ା ଏକା ବୟସର ପିଲାଙ୍କ ସାଙ୍ଗରେ ଖେଳିଲାବେଳେ ଖେଳ ଭିତରେ ନାନା ପ୍ରକାର ନୀତି ଅନୀତି, ନ୍ୟାୟ ଅନ୍ୟାୟ ସହଯୋଗିତା କିମ୍ବା ପ୍ରତିଯୋଗିତା

ବୟସରେ ତା'ର ବହୁ ଶିକ୍ଷା ହୁଏ । ଦଳଦଳ ହୋଇ ନିୟମ କାନୁନ୍ ଅନୁଯାୟୀ ଖେଳିବା ଫଳରେ ଦଳବଦ୍ଧ ହୋଇ ରହିବା ତା ପକ୍ଷରେ ଅଭ୍ୟାସ ହୋଇପଡ଼େ । ଦଳଗତ ସହଯୋଗିତା ଓ ପ୍ରତିଯୋଗିତା ସମସ୍ତଙ୍କ ପକ୍ଷରେ ନିହାତି ଆବଶ୍ୟକ । କିନ୍ତୁ ଖେଳାଳିଙ୍କ ଭିତରେ ଏହାର ବିକାଶ ନହେଲେ, ଅପରାଧୀ ଦଳଙ୍କ ଭିତରେ ତାହା ପରିସ୍ଫୁଟ ହୁଏ । ଏଥିପାଇଁ ସ୍କୁଲ, କଲେଜ ଓ ଘରମାନଙ୍କରେ ବହୁତ ସୁବିଧା, ସୁଯୋଗ ଓ ଉତ୍ସାହ ମିଳିବା ଦରକାର । କିନ୍ତୁ ଯେଉଁମାନଙ୍କର ସେ ସବୁର ଅଭାବ ସେମାନଙ୍କ-ଠାରେ ଅପରାଧ ମନୋବୃତ୍ତି ଗଢ଼ି ଉଠିବାର ସମ୍ଭାବନା ରହିଛି । ଜେଲ ଭିତରେ ମଧ୍ୟ ପ୍ରତିଦିନ ଖେଳର ବନ୍ଦୋବସ୍ତ ରହିବା ଦରକାର ।

ଘରେ କିମ୍ବା ସ୍କୁଲରେ ଖେଳ ଅଭାବରୁ ପିଲାମାନେ ରାସ୍ତାରେ ବୁଲି ବୁଲି ଅନେକ ସମୟରେ ଦୌରାତ୍ମ୍ୟରେ ବଶବର୍ତ୍ତୀ ହୋଇ ଯେଉଁ ପିଲାଳିଆ ଦୁଷ୍ଟାମି କରନ୍ତି, ତାହା ଅସାମାଜିକ ଅପରାଧ ନୁହେଁ, କିନ୍ତୁ ଅନେକ ସମୟରେ ସେପ୍ରକାର ଦୁଷ୍ଟାମି କାଳକ୍ରମେ ଅପରାଧରେ ପରିଣତ ହୁଏ । ତେଣୁ ବେକାର ହୋଇ ରାସ୍ତାରେ ବୁଲିବା ଅଭ୍ୟାସକୁ ଉତ୍ସାହିତ କରିବା ଉଚିତ ନୁହେଁ । ଅନେକ ସମୟରେ ଘର ଅଭାବରୁ ପିଲାମାନେ ଆସି ରାସ୍ତାରେ ବୁଲନ୍ତି—ଖେଳପଡ଼ିଆ ଅଭାବରୁ ରାସ୍ତାରେ ଖେଳନ୍ତି—ସ୍କୁଲ ଅଭାବରୁ ରାସ୍ତାରେ ଅଧିକାଂଶ ସମୟ କଟାନ୍ତି । ସ୍କୁଲ କଲେଜ ଭିତରେ ବସିବା ପାଇଁ ଖେଳିବା ପାଇଁ କମନ୍ ରୁମ୍ ଅଭାବରୁ କ୍ଲାସ ନ ଥିବା ବେଳେ ଦଳ ଦଳ ପିଲା ଆସି ରାସ୍ତାରେ ବୁଲନ୍ତି—ଏଠି ସେଠି ପଶନ୍ତି—ରାସ୍ତାରେ କାହାକୁ ଚିଡ଼ାନ୍ତି ତ ଅନ୍ୟ କାହାକୁ ଢେଲା ଫିଙ୍ଗନ୍ତି ଇତ୍ୟାଦି ବହୁତ ପିଲାଳିଆ ଦୁଷ୍ଟାମି କରନ୍ତି । ଅପରାଧ

ଶିଖିବା ପାଇଁ ସହରର ରାସ୍ତା ଗୋଟିଏ ପ୍ରଧାନ ଶିକ୍ଷାକ୍ଷେତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବାପ ମା ଛେଉଣ୍ଡ ପିଲାମାନେ ରାସ୍ତାରେ ବେଶି ବୁଲନ୍ତି । ଘରେ ସ୍ନେହସହାନୁଭୂତିର ଅଭାବରୁ ସେମାନଙ୍କ ମନରେ ଗୋଟିଏ ପ୍ରକାର ଉଦ୍‌ବେଗ ଓ ଉତ୍ତେଜନା ବୁଗୁଡ଼ୁ ରହୁଥାଏ । ରାସ୍ତାରେ ଆସି ଅନ୍ୟ ପିଲାଙ୍କ ସାଙ୍ଗରେ ବୁଲିବାରେ ସେମାନେ ଅଦ୍ଭୁତ ଆନନ୍ଦ ପାଆନ୍ତି । ରାସ୍ତା ହିଁ ସେମାନଙ୍କ ପକ୍ଷରେ ସୁଖକର ବାସସ୍ଥଳୀ ତଥା ଅପରାଧ ଶିକ୍ଷା ପାଇଁ ଉପଯୁକ୍ତ ଶିକ୍ଷାମନ୍ଦିର ।

ପ୍ରତ୍ୟେକ ପିଲାଠାରେ ଜୈବିକ ଶକ୍ତି ଅଛି । ଏହାର ଉପଯୁକ୍ତ ବ୍ୟବହାର ପାଇଁ ଖେଳ ଓ ବ୍ୟାୟାମର ଆବଶ୍ୟକତା ରହିଛି । ଅନେକ ପିଲା ଅଛନ୍ତି ଯେଉଁମାନଙ୍କଠାରେ ଏହି ଜୈବିକ ଶକ୍ତି ବହୁଳ ପରିମାଣରେ ଦେଖାଯାଏ । ଏ ପ୍ରକାର ପୁଅ ଝିଅଙ୍କ ପକ୍ଷରେ ଜୈବିକ ଶକ୍ତି ବ୍ୟୟ କରିବା ନିହାତି ଦରକାର—ତାହା ନ ହେଲେ ଏହା ସେମାନଙ୍କୁ ଅସ୍ଥିର କରିପକାଏ । ତେଣୁ ସମାଜ ଅନୁମୋଦିତ ଉପାୟରେ ଏହା ବ୍ୟବହୃତ ହୋଇ ନ ପାରିଲେ ନାନା ଅସାମାଜିକ କାର୍ଯ୍ୟରେ ପ୍ରୟୋଗ ହେବାର ସମ୍ଭାବନା ବହୁତ ବେଶି ।

---

# ଅଳ୍ପବୟସ୍କ ଅପରାଧୀଙ୍କ ଅବସ୍ଥା

ଅଳ୍ପ-ବୟସ୍କ ଅପରାଧୀମାନଙ୍କ ପାଇଁ ଆଇନଗତ ଶୃଙ୍ଖଳା ଓ ଶାସ୍ତି ଅପେକ୍ଷା ମାନସିକ ଚିକିତ୍ସା ବେଶି ଦରକାର । ଏହି ତଥ୍ୟଟିକୁ ଉପଲବ୍ଧି ନ କରି ଯାଏ, ଏ ଦିଗରେ ବିଶେଷ କିଛି କରି ହେବନାହିଁ । ପୃଥିବୀର ଉନ୍ନତ ଦେଶମାନଙ୍କରେ ଏହି ମତ ଅନୁସାରେ ଅନେକ ବର୍ଷ ଧରି କାମ ଚାଲିଛି । ଆମ ଦେଶରେ ମଧ୍ୟ ଏହାର ସତ୍ୟତା ଲୋକେ କ୍ରମେ କ୍ରମେ ଉପଲବ୍ଧି କଲେଣି, ତଥାପି ବହୁ ପଣ୍ଡିତମନ୍ୟ ଶିକ୍ଷାବିତ୍ ଏହାକୁ ହସି ଉଡ଼ାଇ ଦିଅନ୍ତି । ଯେଉଁମାନଙ୍କର ଏଥିରେ ବିଶ୍ୱାସ ନାହିଁ ସେମାନଙ୍କର ଅପରାଧୀ ଓ ନିମ୍ନଶ୍ରେଣୀ ଲୋକଙ୍କ ବିରୁଦ୍ଧରେ ଏତେ ବେଶି ଘୃଣା ଓ ବିଦ୍ୱେଷ ରହିଥାଏ ଯେ କୌଣସି ଉପାୟରେ ମଧ୍ୟ ସେମାନଙ୍କୁ ଭଲ ବାଟରେ ଆଣି ହେବ ବୋଲି ବିଶ୍ୱାସ ତାଙ୍କର ଆଦୌ ନ ଥାଏ । ଏମାନଙ୍କ ସହିତ ଯୁକ୍ତି କରି ମଧ୍ୟ ବିଶେଷ ଲାଭ ହୁଏନାହିଁ । ଏମାନେ ଉଚ୍ଚ-ଶିକ୍ଷିତ ହୋଇଥିଲେ ମଧ୍ୟ କୌଣସି ପ୍ରକାର ମନସ୍ତାତ୍ତ୍ୱିକ ପରୀକ୍ଷା କିମ୍ବା ଚିକିତ୍ସାରେ ବିଶ୍ୱାସ କରିବାକୁ ରାଜି ନୁହନ୍ତି । ଦୁଃଖର ବିଷୟ ଯେ; ଏପରି ଲୋକଙ୍କର ସମାଜରେ ଖୁବ୍ ପ୍ରଭାବ ଥିବାରୁ ଆମ ଦେଶରେ ଅପରାଧ ଚିକିତ୍ସା ବିଜ୍ଞାନ ଭଲଭାବରେ କାର୍ଯ୍ୟକାରୀ ହୋଇପାରୁନାହିଁ । କିନ୍ତୁ ଏହା ମଧ୍ୟ ଆନନ୍ଦର କଥା ଯେ, ଆମ ଦେଶର ବହୁ ଜେଲ୍ କର୍ମଚାରୀ ଓ ଆଇନଜ୍ଞ ସେମାନଙ୍କର ଅଜ୍ଞାତ ଅଭିଜ୍ଞତାରୁ ଏ ପ୍ରକାର ଚିକିତ୍ସାମୂଳକ ନୀତିକୁ ପସନ୍ଦ କରୁଛନ୍ତି । ତେଣୁ ଭବିଷ୍ୟତରେ ଏହା ଯେ ପ୍ରସାର ଲାଭ କରିବ ଏଥିରେ ସନ୍ଦେହ ନାହିଁ ।

ପ୍ରଥମତଃ ଦକ୍ଷ ଓ ସହାନୁଭୂତିଶୀଳ କର୍ମୀବୃନ୍ଦଙ୍କ ହାତରେ ଅଳ୍ପ-ବୟସ୍କ ଅପରାଧୀଙ୍କୁ ଛାଡ଼ିବା ଉଚିତ । ସାଧାରଣ ପୋଲିସ କର୍ମକର୍ତ୍ତା ଓ ଦର୍ଦ୍ଦମ ଜେଲରକ୍ଷକଙ୍କ ହାତରୁ ପ୍ରଥମେ ଏମାନଙ୍କୁ ଉଦ୍ଧାର କରିବାକୁ ହେବ । ଅଳ୍ପ-ବୟସ୍କ ଅପରାଧୀ ପାଇଁ ସ୍ୱତନ୍ତ୍ର ଆଇନକାନୁନ ଓ ସ୍ୱତନ୍ତ୍ର ବିଚାରାଳୟ ପ୍ରତିଷ୍ଠା କରିବାକୁ ହେବ । ଆମ ଦେଶର କେତେକ ରାଜ୍ୟରେ ସିଧା ଏ ପ୍ରକାର ଉଦ୍ୟମ ଆରମ୍ଭ ହୋଇଛି । ସ୍ୱତନ୍ତ୍ର ବିଚାରାଳୟର ମାଜିଷ୍ଟ୍ରେଟମାନଙ୍କର ଶିଶୁ-ମନୋବିଜ୍ଞାନ ଓ ସମାଜ ବିଜ୍ଞାନରେ ବିଶେଷ ଭାବେ ପାରଦର୍ଶିତା ଲାଭ କରିଥିବା ଉଚିତ । ଏଥିପାଇଁ ମହିଳା ମାଜିଷ୍ଟ୍ରେଟ ରହିଲେ ଆହୁରି ଭଲ । ସେମାନଙ୍କର ନାରୀସୁଲଭ ସ୍ନେହ ଓ ସହାନୁଭୂତି ଯୋଗୁ ଅଳ୍ପବୟସ୍କ ଅପରାଧୀଙ୍କୁ ଭଲଭାବେ ବୁଝିପାରିବେ । ପୋଲିସ ପ୍ରମାଣ ସହିତ ମନୋବିତ୍ ଓ ସମାଜସେବୀ କର୍ମୀବୃନ୍ଦଙ୍କର ବିବରଣୀ ବିଚାରାଳୟରେ ପେଶ୍ ହେବା ବାଞ୍ଛନୀୟ ।

ମନୋବିତ୍‌ମାନେ ପିଲାକୁ ନାନା ବିଷୟରେ ମନସ୍ତାତ୍ତ୍ୱିକ ପରୀକ୍ଷା କରି ତା'ର ମାନସିକ ଉଦ୍‌ବେଗ ଓ ଉତ୍ତେଜନା ବିଷୟରେ ବିବରଣୀ ଦେଇ ପାରିବେ । ସମାଜସେବୀ କର୍ମୀବୃନ୍ଦମାନେ ଅପରାଧୀର ଘର, ସେମାନଙ୍କର ବାପ ମା ଓ ପାରିବାରିକ ପରିସ୍ଥିତି, ପଡ଼ୋଶୀ ପଡ଼ା ପ୍ରଭୃତି ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥା ବିଷୟରେ ସଠିକ ବିବରଣୀ ଯୋଗାଇପାରିବେ । ଏସବୁ କଥା ବିଚାର କରି ମାଜିଷ୍ଟ୍ରେଟ ଅପରାଧୀର ଚିକିତ୍ସାଲାଗି ବନ୍ଦୋବସ୍ତ କରିବେ । ଅପରାଧୀକୁ ଘରକୁ ଛାଡ଼ିଦିଆ ଯାଇପାରେ ଏବଂ ସେ ଘରେ ଥିଲାବେଳେ ମଝିରେ ମଝିରେ ସ୍ୱତନ୍ତ୍ର କର୍ମୀବୃନ୍ଦମାନେ ଯାଇ ତା ସହିତ ଓ ତା'ର ବାପମାଙ୍କ ସହିତ ପରାମର୍ଶ ଓ ଆଲୋଚନା କରି ଆସୁଥିବେ । ଯେତେଦିନ ଯାଏ ସେ ବାଟକୁ ନ ଆସିଛି,

ସେଠେଡଜ ଯା ଏ କର୍ମକୃଶମାନେ ତା ପ୍ରତି ଦୃଷ୍ଟି ରଖିଥିବେ । ଏହାକୁ ପାରେଲ ପଦ୍ଧତି କୁହାଯାଏ । କିନ୍ତୁ ଯାହାର ଘର ନାହିଁ କିମ୍ବା ଘରର ଅବସ୍ଥା ଅତ୍ୟନ୍ତ ଖରାପ ବା ବାପମା'ଙ୍କର ବ୍ୟବହାର ଏତେ ଖରାପ ଯେ ସେପରି ଘରେ ରହିଲେ ଯେ କୌଣସି ସାଧାରଣ ପିଲାର ଅପରାଧୀ ହୋଇ ଯିବାର ସମ୍ଭାବନା ରହିଛି—ସେପରି ଅବସ୍ଥାରେ ପିଲାକୁ ଘରୁ ଆଣି ଏମାନଙ୍କ ପାଇଁ ତିଆରି ହୋଇଥିବା ସ୍ଵତନ୍ତ୍ର ହଷ୍ଟେଲରେ ରଖିବାର ବନ୍ଦୋବସ୍ତ ହେବା ବାଞ୍ଛନୀୟ । ଏମାନଙ୍କର ବୁଦ୍ଧିର ପରିମାଣ ଓ ଦକ୍ଷତା ଅନୁଯାୟୀ ପାଠ ପଢ଼ାଇବା ପାଇଁ ସମସ୍ତ ସୁବିଧା ରହିବା ଦରକାର । ଏମାନଙ୍କର ହଷ୍ଟେଲ ସାଧାରଣ ପିଲା ରହିବା ହଷ୍ଟେଲଠାରୁ ବହୁତ ବେଶି ଭଲ ହେବା ଦରକାର, ଯେହେତୁ ଡାକ୍ତରଖାନା ଓ ଧର୍ମଶାଳାଠାରୁ ଢେର ଭଲ ହେବା ଆବଶ୍ୟକ ।' ଅଭିଭାବକର ମନୋରଞ୍ଜନରେ ବିଶେଷ ଶିକ୍ଷା ଥିବା ଦରକାର ଏବଂ ଏମାନଙ୍କର ସ୍କୁଲ କଲେଜ ଶିକ୍ଷା ଅପେକ୍ଷା ଏ ପ୍ରକାର କାମରେ ଆଗ୍ରହର ପରିମାଣ ବେଶି ଥିବା ବାଞ୍ଛନୀୟ । ଯେ କୌଣସି ଲୋକ ଏ ପ୍ରକାର କାମରେ କୃତକାର୍ଯ୍ୟ ହୋଇପାରିବ ନାହିଁ ।

ଏ ପ୍ରକାର ହଷ୍ଟେଲ ଅପରାଧୀମାନଙ୍କର ଚିକିତ୍ସା ଦୃଷ୍ଟିରୁ ହୋଇଥିବାରୁ ଏଠାରେ ଚରିତ୍ର ଗଠନ ଲାଗି ଯେ ପ୍ରକାର ବ୍ୟବସ୍ଥା ଦରକାର, ସେ ସବୁ ରହିବା ଦରକାର । ସେପରି କର୍ତ୍ତବ୍ୟନିଷ୍ଠା ଶିକ୍ଷାଲାଗି ଯେପରି କାମ ହେବା ଦରକାର, ସେପରି କାମ ସହିତ ଖେଳ, ଥିଏଟର କରିବା ଓ ସିନେମା ଥିଏଟର ଦେଖିବା, ବଣ-ଭୋଜିରେ ଯିବା ପ୍ରଭୃତି ଆମୋଦକର କାମର ବନ୍ଦୋବସ୍ତ ଥିବା ବିଶେଷ ଭାବେ ଦରକାର । ଅପରାଧୀମାନଙ୍କର ଆତ୍ମସମ୍ମାନ ଓ

ଆତ୍ମବିଶ୍ୱାସ ବହୁତ କମ୍ ଥାଏ । ହଷ୍ଟେଲରେ ରହିବା ସମୟରେ ସେମାନଙ୍କର ଏ ଦୁଇଟି ଗୁଣ ଯେପରି ବୃଦ୍ଧି ପାଏ ତାର ବନ୍ଦୋବସ୍ତ କରିବା ଦରକାର । କେତେ ଥର ଚୋରି କିମ୍ବା ଅନ୍ୟ କୌଣସି ଅପରାଧ କରି ସାରିଲା ପରେ ପିଲାର ଆତ୍ମବିଶ୍ୱାସ ବହୁତ କମିଯାଏ । ତେଣୁ ପ୍ରଥମେ ପ୍ରଥମେ ସାମାନ୍ୟ ସାମାନ୍ୟ କଥାରେ ତା'ର ଆତ୍ମବିଶ୍ୱାସ ଫେରାଇ ଆଣିବାକୁ ଚେଷ୍ଟା କରିବା ଉଚିତ । ଯା'ର ଚୋରି ଅଭ୍ୟାସ ଥାଏ, ତାକୁ ପ୍ରଥମେ କେତୋଟି ପଇସା ଦେଇ ବଜାରକୁ ପଠାଇବା । ସେ ଠିକ୍ ଭାବରେ ହିସାବ ଦେଖାଇ ପାରିଲେ କିମ୍ବା କୌଣସି କାର୍ଯ୍ୟ କୃତକାର୍ଯ୍ୟତାର ସହିତ ସମ୍ପାଦନ କଲେ, ତାକୁ ଯଥୋଚିତ ପ୍ରଶଂସା କରିବା ନିହାତି ଉଚିତ । ପ୍ରଥମରୁ ତାକୁ କୌଣସି ବଡ଼ କାମରେ ପଠାଇବା ଠିକ୍ ନୁହେଁ । ଯାହାର ଜୀର୍ଣ୍ଣଶକ୍ତି କମ୍ ତାକୁ ଯିମା ଅଳ୍ପ ଅଳ୍ପ କରି ଖାଇବାକୁ ଦେଲେ ସେ ଜୀର୍ଣ୍ଣ କରି ପାରିବ । ସେ ଯଦି ପ୍ରଥମରୁ ଅକୃତକାର୍ଯ୍ୟ ହୁଏ ତାହେଲେ ମଧ୍ୟ ହତାଶ ହେବା ଉଚିତ ନୁହେଁ । ତାର ଆତ୍ମବିଶ୍ୱାସ ଆସିବାରେ ଟିକିଏ ଡେରି ହୋଇପାରେ, କିନ୍ତୁ ପରିଶ୍ରମ କଲେ ସେ ନିଶ୍ଚୟ ଦିନେ ନା ଦିନେ ତାର ବସ୍ତୁ ଆତ୍ମବିଶ୍ୱାସକୁ ଫେରି ପାଇବ । ତାର ଅତୀତର କଳଙ୍କ କାହାଣୀ ନେଇ ତାକୁ ଅଦୌ ବ୍ୟସ୍ତ କରିବ ନାହିଁ — କିମ୍ବା ବାରମ୍ବାର ସେହି କଥା ମନେ କରାଇ ଦେଇ ଲଜ୍ଜିତ କିମ୍ବା ଅପମାନିତ କରାଇବ ନାହିଁ । ମନୋବିଜ୍ଞାନ, ସମାଜବିଜ୍ଞାନ ଓ ମାନବୀୟ ବିକାଶ ଦୃଷ୍ଟିରୁ ଅପରାଧ ଉପରେ ଷଡକାରକ ସେ କଥା ପ୍ରକାରାନ୍ତରରେ ବୁଝାଯାଇପାରେ । ମୋଟାମୋଟି ମନୋବିଜ୍ଞାନର ସୂକ୍ଷ୍ମ ବୈଜ୍ଞାନିକ ପ୍ରଣାଳୀରେ ସେମାନଙ୍କର ବାଧାବନ୍ଧ ଚିକିତ୍ସା ହେଲେ ସେମାନଙ୍କୁ ପୁଣି ବାଟକୁ ଆଣିହେବ । ତା' ଫଳରେ ସେମାନଙ୍କର ଯେ କେବଳ ଜୀବନ

ସୁଖମୟ ହେବ ତା ନୁହେଁ, ସମାଜର ମଧ୍ୟ ପ୍ରଭୂତ ମଙ୍ଗଳ ସାଧିତ ହେବ ।

'ଜେଲ ଯିବା' ପୂର୍ବରୁ ଅପରାଧୀମାନଙ୍କର ଚିକିତ୍ସା ଆରମ୍ଭ କଲେ ଶୀଘ୍ର ସେମାନଙ୍କୁ ଆରୋଗ୍ୟ କରିହୁଏ । କିନ୍ତୁ ଥରେ ଜେଲକୁ ଗଲେ ସେମାନଙ୍କର ମନ ଆହୁରି କଠିନ ହୋଇଯାଏ ଏବଂ ସମାଜ ମଧ୍ୟ ଏମାନଙ୍କୁ ନିରପରାଧ ବୋଲି ସହଜରେ ଗ୍ରହଣ କରିପାରେ ନାହିଁ । ତଥାପି ପ୍ରଥମ ଅପରାଧ ପାଇଁ ଜେଲ ଯାଉଥିବା ଅପରାଧୀକୁ ସହଜରେ ଭଲ ବାଟକୁ ଆଣିହେବ । ପ୍ରଥମ ଅପରାଧରେ ଦଣ୍ଡିତ ଅପରାଧୀକୁ 'ଜେଲ ଭିତରେ ହିଁ ଉପଯୁକ୍ତ ଶିକ୍ଷା ଦେବା ଦରକାର । ଜେଲକୁ ବନ୍ଦୀଖାନା ହିସାବରେ ନ ଧରି ଚିକିତ୍ସାଳୟ ହିସାବରେ ଗ୍ରହଣ କରିବା ଉଚିତ । ଆଗରୁ ମଧ୍ୟ ସେ ଧାରଣା ଆମର ଅଛି । ସେଥିଲାଗି ଜେଲ ସୁପରିଣ୍ଟେଣ୍ଡେଣ୍ଟ ହିସାବରେ ଜଣେ ପୋଲିସ କର୍ମଚାରୀ ନ ରହି ଜଣେ ଡାକ୍ତର ରହିଛନ୍ତି—ଜେଲ ବିଭାଗର ମୁଖ୍ୟ କର୍ମଚାରୀ ଡାକ୍ତର; କିନ୍ତୁ ଏହା ମଧ୍ୟ ପୁରୁଣା ହୋଇଗଲାଣି । ଡାକ୍ତର ଅପେକ୍ଷା ମନୋବିତ୍ର ବେଶି ଦରକାର । ଅପରାଧୀର ଶାରୀରିକ ରୋଗ ଅପେକ୍ଷା ମାନସିକ ରୋଗର ଗୁରୁତ୍ୱ ବେଶି । ଜେଲ ଭିତରେ ତାକୁ ଉପଯୁକ୍ତ ସାଧାରଣ ଶିକ୍ଷା ଓ ବୃତ୍ତି ଶିକ୍ଷା ସହିତ ଅନ୍ୟାନ୍ୟ ଚରିତ୍ର ଗଠନ କରିପାରିବା ଭଳି ଶିକ୍ଷାଦେବା ଉଚିତ । ଜେଲରୁ ଖଲାସ ହେବା ପୂର୍ବରୁ ସେ ସମାଜରେ କିପରି ସୁବିଧାରେ ନିଜର ଅଭାବ ମେଣ୍ଟାଇ ପାରିବ, ତା'ର ବନ୍ଦୋବସ୍ତ ହେବା ଦରକାର । ବର୍ତ୍ତମାନ ଜଣେ ଅପରାଧୀ ଜେଲରୁ ବାହାରିଲା ପରେ ପରେ ହିଁ ଚୋରି ଆରମ୍ଭ କରିବାକୁ ବାଧ୍ୟ ହୁଏ । କାରଣ ତାକୁ ସମାଜରେ କେହି ଗ୍ରହଣ କରନ୍ତିନାହିଁ । ଜେଲରୁ ମୁକ୍ତଥିବା

କେତେ ପିଲାଙ୍କ ଲାଗି ଗୃହକର୍ମ ବନ୍ଦୋବସ୍ତ କରିବାପାଇଁ ଲେଖକ ଅନେକ ଥର ଚେଷ୍ଟା କରିଥିଲା; କିନ୍ତୁ କର୍ତ୍ତୃପକ୍ଷ ତାଙ୍କୁ ଗୃହକର୍ମ ଦେବା ପାଇଁ ରାଜି ହେଲେନାହିଁ । ଏ ଦିଗରେ ସରକାରଙ୍କ ତରଫରୁ ସୁବନ୍ଦୋବସ୍ତ ହେବା ଉଚିତ୍ । ଯେ ଜେଲକୁ ଥରେ ଯିବ ତା'ର ପୂରା ଦାୟିତ୍ୱ ସରକାରଙ୍କର ହେବା ଉଚିତ । ସମାଜର ସୁଖ ସମ୍ପଦ ରକ୍ଷାକରିବା ଲାଗି କେବଳ ବନ୍ଦୀଶାଳା ତିଆରି କରିଦେଲେ ହେବନାହିଁ । ବନ୍ଦୀଶାଳାକୁ ଚିକିତ୍ସାଳୟରେ ପରିଣତ କରିବା ଦରକାର ଏବଂ ଏ ପ୍ରକାର ଶ୍ରେଣୀର ରୋଗ ଯେପରି ପୁଣି ଥରେ ଦେଖା ନ ଦିଏ ତା'ର ମଧ୍ୟ ସୁବନ୍ଦୋବସ୍ତ ହେବା ଦରକାର । ତା ନ ହେଲେ ବର୍ତ୍ତମାନର ପ୍ରଚଳିତ ବନ୍ଦୀଶାଳାମାନ ସାଧାରଣ ଅପରାଧୀକୁ ଆହୁରି ବେଶି ନିର୍ଦ୍ଦୟ ଓ ନିର୍ମମ କରି ଗଢ଼ୁଛି । ସମାଜର ଦୁଃଖ ଦୁର୍ଦ୍ଦଶା କମାଇବା ପରିବର୍ତ୍ତେ ତାକୁ ଅନେକ ଗୁଣରେ ବୃଦ୍ଧି କରୁଛି ।

ସୁଖର କଥା, ଏ ଦିଗରେ ଆମମାନଙ୍କର ଚେଷ୍ଟା ଆରମ୍ଭ ହେଲଣି । ଏ ଦିଗରେ ଆମର ଯୋଜନା ଖୁବ୍ ମନ୍ଥର ଗତିରେ କାର୍ଯ୍ୟକାରୀ ହେଉଥିଲେ ହେଁ ନିକଟ ଭବିଷ୍ୟତରେ ଯେ ଆମେ ବହୁତ ଆଗେଇ ଯାଇ ପାରିବା, ଏଥିରେ ସନ୍ଦେହ ନାହିଁ ।

---

## ଅପରାଧୀ ଓ ଶାସନ ବ୍ୟବସ୍ଥା

ପୂର୍ବରୁ ବର୍ଣ୍ଣନା କରାଯାଇଥିବା ଅନୁଚ୍ଛେଦରେ ଅପରାଧୀ-ମାନଙ୍କୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି । ଗୋଟିଏ ହେଉଛି ସାମାଜିକ ସଂସ୍ଥାର ଦୁର୍ବଳତା ଯୋଗୁଁ ଅର୍ଥନୈତିକ ଓ ରାଜନୈତିକ ଭଦ୍ରଲୋକ ଅପରାଧୀ । ଆଉ ଦଳେ ହେଉଛନ୍ତି ଅପରାଧ ପ୍ରବଣ ଅପରାଧୀ । ଦ୍ୱିତୀୟ ପ୍ରକାରର ଅପରାଧୀମାନଙ୍କ-ଠାରେ ନାନା ପ୍ରକାର ପାରିବାରିକ ଓ ମନସ୍ତାତ୍ତ୍ୱିକ କାରଣ ଯୋଗୁଁ ଅପରାଧ ପ୍ରବଣତା ଦେଖା ଦେଇଥାଏ । ପ୍ରଥମ ପର୍ଯ୍ୟାୟର ଲୋକଙ୍କୁ ଠିକ୍ ମାର୍ଗରେ ଆଣିବାପାଇଁ ସରକାରୀ କଳର ସମ୍ପୂର୍ଣ୍ଣ ପରିବର୍ତ୍ତନ ଦରକାର—ସାମାଜିକ ସଂସ୍ଥାର ବୈପ୍ଳବିକ ପରିବର୍ତ୍ତନ ଦରକାର । ସେମାନେ ତ ଜେଲକୁ ଯାଆନ୍ତି ନାହିଁ—ଜେଲ ଗଲେ ମଧ୍ୟ ଘରଭଳି ଆରାମରେ ରହନ୍ତି—ଅର୍ଥନୈତିକ ବା ରାଜନୈତିକ ପ୍ରଭାବ ଫଳରେ ସେମାନେ ମୁକ୍ତିଲାଭ କରନ୍ତି—ଆଇନ ସେମାନଙ୍କୁ ସବୁବେଳେ ସାହାଯ୍ୟ କରିଥାଏ କାରଣ ଆଇନ ଏମାନଙ୍କୁ ଆଖିରେ ରଖି କରାଯାଇଥାଏ । ପୁଞ୍ଜିପତି ଓ ସାମନ୍ତବାଦୀ ସମାଜରେ ଆଇନ ଅଦାଲତ ତିଆରି ହୋଇଥାଏ, ଶାସକ ଓ ଧନୀ ଶ୍ରେଣୀର ଉପକାର ପାଇଁ ଏବଂ ଆଇନ ଅଧିକାଂଶ ସମୟରେ ସେମାନଙ୍କୁ ସାହାଯ୍ୟ କରେ । କୌଣସି ଜଣେ ବିଶିଷ୍ଟ ରାଜନୈତିକ ନେତା ଆଜିଯାଏଁ ଅର୍ଥନୈତିକ ଓ ରାଜନୈତିକ ଅପରାଧ ଯୋଗୁ ଜେଲ୍ ଗିବା ସମ୍ଭବ ହୋଇନାହିଁ । ଆଇନ ଅଦାଲତରେ ଲୋକଙ୍କୁ ଦେଖାଇବା ପାଇଁ ସେମାନଙ୍କ ବିରୁଦ୍ଧରେ ମକଦ୍ଦମା ଆରମ୍ଭ

ହୋଇଥାଏ—ତାହା ବହୁବର୍ଷ ଧରି ଗ୍ଭଲେ—ତାପରେ ସେମାନେ ଶାସକ ଦଳଙ୍କର ଦୁଅନ୍ତ—ଏହି ମକଦ୍ଦମା ସବୁ କୁଆଡ଼େ ଯାଏ ।

ଡେଣୁ ସେମାନଙ୍କର ସଂଶୋଧନ ପାଇଁ ସାମାଜିକ ବିପ୍ଳବ ଦରକାର ।

ଆଜ ଯେଉଁ କେତେକ ସାଧାରଣ ଅପରାଧୀ ରହିଗଲେ— ଯେଉଁମାନେ କ ଜେଲରେ ରହନ୍ତି, ସେମାନଙ୍କର ସଂଶୋଧନ ସମ୍ଭବ ଏବଂ ସେଥିପାଇଁ ଧାରାବାହିକ ଓ ସୁସଙ୍ଗଠିତ ଉଦ୍ୟମ ହେବା ବାଞ୍ଛନୀୟ ବୋଲି ସବୁ ସଭ୍ୟ ଦେଶମାନଙ୍କରେ ଏହା ସର୍ବସମ୍ମତ ମତରୂପେ ଗୃହୀତ ହୋଇଛି ।

ଜେଲ ପରିଚାଳନାରେ କଡ଼ା ଶାସନ ଦୃଢତା ଦରକାର ହୋଇ ପାରେ, କିନ୍ତୁ ତା ସହିତ ମାନବୀୟ ଦୃଷ୍ଟିକୋଣରୁ ଦୟା, କ୍ଷମା ଓ ସହାନୁଭୂତିର ଆବଶ୍ୟକତା ବେଶି । ସେହି ଦୃଷ୍ଟିରୁ ଜେଲ କର୍ତ୍ତୃପକ୍ଷମାନେ ବିଶେଷ ପ୍ରକାରର ଶିକ୍ଷା ପ୍ରାପ୍ତ ହେବା ଉଚିତ । ଯେକୌଣସି ଗ୍ର ଜୁଏଟ ଏହି କାର୍ଯ୍ୟରେ ରହିଲେ ଯଥେଷ୍ଟ ହେବ ନାହିଁ । ମନୋବିଜ୍ଞାନ ଓ ସମାଜ ବିଜ୍ଞାନରେ ଜ୍ଞାନ ଥିବା ଲୋକେ ଏହି କାମ ପାଇଁ ନିଯୁକ୍ତ ହେବା ଦରକାର । ତାପରେ ମଧ୍ୟ ଅପରାଧୀମାନଙ୍କର ଉପଯୁକ୍ତ ସଂଶୋଧନ ପାଇଁ କି ପ୍ରକାର ଯୋଜନା ଜେଲ ଭିତରେ ଏବଂ ବାହାରେ କରିହେବା ଦରକାର ସେ ବିଷୟରେ ମଧ୍ୟ ବିଶେଷ ତାଲିମ ଦିଆଯିବା ଉଚିତ ! ମଝିରେ ମଝିରେ ଏ ବିଷୟରେ ଆଲୋଚନା, ନୂଆ ଧରଣର ଶିକ୍ଷା, ଗବେଷଣା ପ୍ରଭୃତି ଧାରାବାହିକ କାର୍ଯ୍ୟକ୍ରମ ଜେଲରେ ପରିଚାଳିତ ହେବା ଦରକାର । ଖାଲି ଜ୍ଞାନର ପରିସର ବଢ଼ିଗଲେ ଯଥେଷ୍ଟ ନୁହେଁ; ମାନବୀୟ ଦୃଷ୍ଟିକୋଣ ଥିବା ଅପରାଧୀଙ୍କ ପାଇଁ ଗଭୀର ଅନୁକମ୍ପା ଥିବା ଲୋକେ ଏହି କାମ ପାଇଁ ଉପଯୁକ୍ତ । ଯେଉଁମାନଙ୍କର ଧୈର୍ଯ୍ୟର ଅଭାବ, ଯେଉଁମାନେ ନିଷ୍ଠୁର ପ୍ରକୃତିର ଲୋକ

ଏବଂ ଯେଉଁମାନେ ଅଧିକାଂଶ ସମୟରେ କର୍ତ୍ତା ଆଇନ ପ୍ରୟୋଗର ପକ୍ଷପାତୀ, ସେମାନେ ଅପରାଧୀଙ୍କ ହେପାଜତ ପାଇଁ ସମ୍ପୂର୍ଣ୍ଣରୂପେ ଅନୁପଯୁକ୍ତ । ବହୁ ଅପରାଧୀ ସ୍ନେହ ଶ୍ରଦ୍ଧା ସାହାଯ୍ୟରେ ସମ୍ପୂର୍ଣ୍ଣ-ରୂପେ ସଂଶୋଧିତ ହୋଇଯିବାର ବହୁ ଉଦାହରଣ ରହିଛି ।

ଆଜିକାଲି ଅନେକ ଦେଶରେ ମୁକ୍ତ ସାମାଜିକ ପରିସର ଭିତରେ ଅପରାଧୀମାନଙ୍କୁ କାମ କରିବାକୁ ଛାଡ଼ି ଦିଆଯାଏ । ସେମାନେ ଦିନଯାକ କାମ କରି, ସେମାନଙ୍କର ପରିବାର ଲୋକଙ୍କୁ ସାହାଯ୍ୟ କରି କେବଳ ରାତିରେ ଜେଲ୍‌କୁ ଫେରନ୍ତି । ଏହା ଅପରାଧ ସଂଶୋଧନ ପାଇଁ ବହୁତ ଫଳପ୍ରଦ ବୋଲି ଜଣାଯାଇଛି । ସେ ପ୍ରତ୍ୟେକଦିନ ଜେଲ୍‌କୁ ଫେରିଲାବେଳକୁ ଅନୁଭବ କରୁଛି ଯେ ସମାଜ ପ୍ରତି ସେ ଅନ୍ୟାୟ କରିଛି । ଏହି ମନୋଭାବ କାଳକ୍ରମେ ତାର ବିବେକକୁ ବଦଳାଇଦିଏ । ସୋଭିଏତ ରୁଷରେ ମାକରେଙ୍କୋ ନାମକ ଜଣେ ବିଖ୍ୟାତ ଶିକ୍ଷାବିତ୍ ଅଳ୍ପ ବୟସ୍କ ଅପରାଧୀଙ୍କୁ ଗୋଟିଏ ବସ୍ତିରେ ଏପରି ଭାବରେ ସ୍ନେହ ଶ୍ରଦ୍ଧା ସହକାରେ ତାଲିମ ଦେଇଥିଲେ ଯେ ଭବିଷ୍ୟତରେ ସେହି ବସ୍ତିରେ ଥିବା ଅପରାଧୀ-ମାନେ ଗୋଟିଏ କର୍ତ୍ତବ୍ୟନିଷ୍ଠ ଦକ୍ଷ କ୍ରିୟାଶୀଳ ଗୋଷ୍ଠୀରେ ପରିଣତ ହେଲେ ଏବଂ ସମାଜରେ ବହୁ କାର୍ଯ୍ୟ କୃତକାର୍ଯ୍ୟତାର ସହ ସମ୍ପାଦନ କରିଥିଲେ । ତାଙ୍କର ଏହି ଅଭିଜ୍ଞତା "ରୋଡ଼ ଟୁ ଲାଇଫ୍" ନାମକ ପୁସ୍ତକରେ ଲିପିବଦ୍ଧ ହୋଇଛି ଏବଂ ଏହାର ଗୋଟିଏ ଚଳଚ୍ଚିତ୍ର ମଧ୍ୟ ଇଂରେଜିରେ କରାଯାଇଛି ।

ଜେଲ ଭିତରେ ଥିଲାବେଳେ ସେମାନଙ୍କ ସହିତ ବନ୍ଧୁତା କରିବା—ସେମାନଙ୍କର ଭଲ ମନ୍ଦ ଖବର ରଖିବା—ସେମାନଙ୍କର ପରିବାର ସହିତ ସମ୍ପର୍କ ରଖିବା ପ୍ରଭୃତି ସ୍ନେହ ସହାନୁଭୂତିପୂର୍ଣ୍ଣ ବ୍ୟବହାର ଜେଲ୍ କର୍ତ୍ତୃପକ୍ଷଙ୍କର ଦୈନନ୍ଦିନ କାର୍ଯ୍ୟ ସ୍ୱଭାବରେ

ଗୃହୀତ ହେବା ଦରକାର । ଅପରାଧୀମାନେ ଜେଲରୁ ବାହାରିବା ସାଙ୍ଗେ ସାଙ୍ଗେ ସେମାନଙ୍କର ଥଇଥାନ ପାଇଁ ସୁବନ୍ଦୋବସ୍ତ ହେବା ଦରକାର । ତା ନ ହେଲେ ସେମାନେ ପୁଣି ଜେଲ୍ ଭିତରକୁ ଫେରିଆସନ୍ତି । ଅନେକ ସ୍ଥାନରେ ମୁକ୍ତ ଅପରାଧୀ ସେବା ସଂସ୍ଥାମାନ ରହିଛି । ଓଡ଼ିଶାରେ ଏପରି ଗୋଟିଏ ଅନୁଷ୍ଠାନ ସହିତ ଲେଖକ ବହୁବର୍ଷ ତଳେ ସଂପୃକ୍ତ ଥିଲା ଏବଂ ଗୋଟିଏ କୁଖ୍ୟାତ ଚୋରକୁ ଭଲ ମଣିଷ କରିବାରେ ଏହି ଅନୁଷ୍ଠାନ ସକ୍ଷମ ହୋଇଥିଲା ।

ଏ ସମ୍ପର୍କରେ ଗୋଟିଏ ବଡ଼ ଅସୁବିଧା କଥା ମନେ ଅଛି । ଏହି ଅପରାଧୀ ଜି ଜେଲରୁ ଖଲାସ ହେବା ପରେ ପ୍ରତି ମାସରେ ଅନ୍ତତଃ ଥରେ ଦ'ଥର ତାକୁ ପୋଲିସ ଥାନାକୁ ନେଇଯାଏ— କାରଣ ସେ ଅଞ୍ଚଳରେ ଯେ କୌଣସି ସ୍ଥାନରେ ଚୋରି ହେଲାକ୍ଷଣି ପ୍ରଥମେ ତାକୁ ଥାନାକୁ ନଆଯାଏ । ସେ ପ୍ରକୃତରେ ନିର୍ଦ୍ଦୋଷ ଏବଂ ଏଥିପାଇଁ ସେ ବହୁତ ବ୍ୟସ୍ତ ହୁଏ । ଦେଖିଲେ ଦୁଃଖ ଲାଗେ । ଅର୍ଥାତ୍ ତାକୁ ପୋଲିସ ବିଶ୍ୱାସ କରେ ନାହିଁ ଯେ ସେ ଆଉ ଚୋରି କରିବାକୁ ଯାଉନାହିଁ । ତେଣୁ ଅପରାଧୀ ମୁକ୍ତ ହେଲା ପରେ ପୋଲିସ, ସମାଜ ମଙ୍ଗଳ ଅଫିସର, ଜେଲ୍ କର୍ତ୍ତୃପକ୍ଷ, ଅପରାଧୀର ପରିବାର, ତାର ବନ୍ଧୁବାନ୍ଧବ, ପଡ଼ୋଶୀ ସମସ୍ତଙ୍କ ସାହାଯ୍ୟ ନେଇ ଅପରାଧୀର ଥଇଥାନ କରିବା ଉଚିତ । ବହୁ ଉନ୍ନତ ଦେଶମାନଙ୍କରେ ଏ ପ୍ରକାର ବ୍ୟବସ୍ଥା ଅତି ବିସ୍ତୃତ ଭାବରେ କରାଯାଇଥାଏ ଏବଂ ଏଥିପାଇଁ ବହୁତ ଖର୍ଚ୍ଚ ମଧ୍ୟ କରାଯାଏ । କାରଣ ଏମାନଙ୍କ ମତରେ ଅପରାଧୀମାନେ ଗୋଟିଏ ପ୍ରକାର ସାମାଜିକ ରୋଗୀ । ତେଣୁ ସେମାନଙ୍କର ଚିକିତ୍ସାପାଇଁ ସବିଶେଷ ଯୋଜନାର ଆବଶ୍ୟକତା ରହିଛି । ତା ନ ହେଲେ ଶେଷରେ ସେହି ସମାଜ ହିଁ ଅସୁବିଧାର ସମ୍ମୁଖୀନ ହେବ । ତା ଛଡ଼ା ଅପରାଧୀକୁ ଜେଲରେ ରଖିବା ଖର୍ଚ୍ଚ କିଛି କମ୍ ନୁହେଁ ।

ଅପରାଧ ନିରାକରଣ ଓ ଅପରାଧୀମାନଙ୍କର ସଂଶୋଧନ ଯୋଜନା ସମ୍ବନ୍ଧରେ ଆଜି ଗୋଟିଏ କଥାରେ ଆବଶ୍ୟକତା ରହିଛି । ତାହା ହେଉଛି ଅପରାଧ ଆଇନ ବିଷୟରେ ଲୋକମାନଙ୍କୁ ବିଶେଷ ଶିକ୍ଷା ଦେବା ଉଚିତ । ଅନେକ ସମୟରେ ଏହି ଶିକ୍ଷା ଅଭାବରୁ କେତେକ ଲୋକ ଜେଲ୍ ଦଣ୍ଡ ପାଇଥାନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ଘଟଣା ଦିଆଯାଇପାରେ । ଏହି ଘଟଣାଟିର ପରକାଶ୍ୟ ପୁନଃ ସମୀକ୍ଷାବେଳେ ଲେଖକ ଉପସ୍ଥିତ ଥିଲେ । ଘଟଣାଟି ହେଉଛି—ଗୋଟିଏ ଆଦିବାସୀ ବୁଢ଼ା ଗୋଟିଏ ଗାଆଁର ମୁଖିଆ ଥିଲା । ସେ ଦିନେ ଦେଖିଲା ଯେ ଗୋଟିଏ ବୁଢ଼ୀ କଣ ଆବୁରୁ-ଜାବୁରୁ କଥାବାର୍ତ୍ତା କରି କରି ଗୋଟିଏ ଫଳନ୍ତ ଲେମ୍ବୁଗଛ ପାଖ ଦେଇ ଚାଲିଥିଲା । ତାପରେ ଦେଖାଗଲା ଯେ କିଛିଦିନ ପରେ ସେହି ଫଳନ୍ତ ଗଛଟି ମରିଯାଇଛି । ଆଉ ଦିନେ ବୁଢ଼ା ଦେଖିଲା ବୁଢ଼ୀ ଜଣଙ୍କ ଘରୁ ବାହାରି ଆସୁଛି—ତା ପରଦିନ ଦେଖାଗଲା ସେହି ଘରୁ ଗୋଟିଏ ବଳଦ ମରିଗଲା । ତା' ପରେ ବି ଆଉ ଦିନେ ଆଉ ଜଣଙ୍କ ଘରକୁ ବୁଢ଼ୀ ଯାଇଥିଲା । ସେହି ପରିବାରରୁ ଗୋଟିଏ ପିଲା ତାପରେ ମରିଗଲା । ଏହି ତିନୋଟି ଘଟଣା ଦେଖିଲା ପରେ ବୁଢ଼ାର ଦୃଢ଼ ଧାରଣା ହେଲା ଯେ ବୁଢ଼ୀଟି ଡାହାଣୀ ଏବଂ ସେହି କାରଣରୁ ଗୋଟିଏ ପରେ ଗୋଟିଏ ତିନୋଟି ଘଟଣା ଏପରି ଘଟିଲା । ବୁଢ଼ା ଯେତେବେଳେ ଗାଆଁର ମୁଖିଆ, ଗାଁର ଭଲମନ୍ଦ ତା ଉପରେ ନିର୍ଭର କରୁଛି । ତେଣୁ ସେ ଗାଆଁର ଲୋକଙ୍କୁ ବିପଦରୁ ରକ୍ଷା କରିବା ଲାଗି ବୁଢ଼ୀଟିକୁ ମାରିଦେଲା ଏବଂ ଥାନାରେ ଆସି ଖବର ଦେଲା । ତାପରେ ସେ ଜେଲରେ ଥାଏ ।

ଏହି ଘଟଣାଟି ଶୁଣିଲା ପରେ ଲେଖକ ମତ ଦେଇଥିଲା ଯେ ବୁଢ଼ାର ଚରିତ୍ର ଦେଶବତ୍ସଳତା ଯୋଗୁ ତାକୁ ବିଶେଷ ଭାବରେ

ସମ୍ମାନ ଦେଖାଇ ଜେଲରୁ ଛାଡ଼ିଦେବା ଉଚିତ । ଆଦିବାସୀ ବୁଢ଼ାର ଯେତିକ ଜ୍ଞାନ ସେଥିରୁ ତାର ଦୃଢ଼ଧାରଣା ହେଲା ଯେ ବୁଢ଼ୀଟି ଡାହାଣୀ, ତାଙ୍କୁ ରକ୍ଷା କରିବା ଲାଗି ବୁଢ଼ୀକୁ ମାରିଲା । ବୁଢ଼ୀ ସହିତ ତାର ବ୍ୟକ୍ତିଗତଭାବେ କୌଣସି ଶତ୍ରୁତା ନ ଥିଲା । ସେ ମଧ୍ୟ ଆଇନ ଜାଣିନ ଯେ ଏପରି ଭାବରେ ତାର ଉପକାର ପାଇଁ ବୁଢ଼ୀକୁ ମାରିଲେ ମଧ୍ୟ ତାର ଦଣ୍ଡ ପାଇବ । ସେ ଆଇନ ବିଷୟରେ ତ ଜୀବନରେ କେବେ ଶୁଣିନାହିଁ । ବ୍ରିଟିଶ ସରକାର ଯେଉଁ ଆଇନ ପ୍ରଣୟନ କରିଥିଲେ ଏବଂ ଆମେ ଯାହାକୁ ମାନୁଛୁ, ସେ ବିଷୟରେ ଆଦିବାସୀଙ୍କର କୌଣସି ଜ୍ଞାନ ନାହିଁ । ତା ଛଡ଼ା ଆଦିବାସୀ ବୁଢ଼ାର ଯେପରି କେତେକ ବିଷୟରେ କୁସଂସ୍କାର ଓ ଅନ୍ଧବିଶ୍ୱାସ ରହିଛି ଅନ୍ୟ ତଥାକଥିତ ଶିକ୍ଷିତ ଲୋକମାନଙ୍କର ମଧ୍ୟ ବହୁ ବିଷୟରେ ସେହିପରି ଅନ୍ଧବିଶ୍ୱାସ ରହିଛି । ତେଣୁ ଆଦିବାସୀଙ୍କୁ କୌଣସି ଶିକ୍ଷାଦୀକ୍ଷା ନ ଦେଇ, ଆଇନ ବିଷୟରେ କୌଣସି ଜ୍ଞାନ ନ ଥିବା ଲୋକକୁ ଆଣି ଜେଲରେ ଭର୍ତ୍ତି କରିବା ବିଧେୟ ନୁହେଁ । ଆଇନ ବିଷୟରେ ଅଜ୍ଞତା ଆଇନରେ ଗ୍ରହଣ-ଯୋଗ୍ୟ ନୁହେଁ । ମାତ୍ର ଅନୁସାରେ, ଯୁଗଯୁଗ ଧରି ଏ ବିଷୟରେ ଜାଣିବାର ଯେଉଁ ଲୋକଙ୍କର କୌଣସି ସମ୍ଭାବନା ମଧ୍ୟ ନାହିଁ ତାଙ୍କୁ ଅପରାଧୀ ବୋଲି ଧରିନେବା ଆଦୌ ବିଧିସମ୍ମତ ନୁହେଁ ।

ମୋଟାମୋଟି ଭାବରେ କୁହାଯାଇପାରେ ଯେ ଆଇନ ବିଷୟରେ ସଠିକ୍ ଖବର ବିଷୟରେ ଆମ ଦେଶ ପରି ଅଶିକ୍ଷିତ ଜନତାକୁ ବୁଝାଇଦେବା ଉଚିତ । ଅପରାଧ ବିରୋଧ ଦିଗରେ ଏହିପରି ଶିକ୍ଷା ବିଶେଷ ଭାବରେ ଫଳପ୍ରଦ ହେବାର ସମ୍ଭାବନା ।

---